କଲୋଡିଙ୍କ ଗପଟିଏ

# ମନ ମଉଜ କଥା

## ପିନାକିୟୋର ଓଡ଼ିଆ ଅନୁବାଦ



ଭାଷାନ୍ତର : ସହଦେବ ପ୍ରଧାନ

# ମନ ମଉଜ କଥା

[ ପିନାକିୟୋର ଓଡ଼ିଆ ଅନୁବାଦ ]

ଭାଷାନ୍ତର : ସହଦେବ ପ୍ରଧାନ

ନିରୁପମା ପ୍ରକାଶନୀ

ବାଖରାବାଦ୍, ନନ୍ଦସାହି, କଟକ - ୨

ମନ ମଉଜ କଥା – ଭାଷାନ୍ତର : ସହଦେବ ପ୍ରଧାନ, ପ୍ରକାଶକ : ନିରୂପମା ପ୍ରକାଶନୀ, ବାଖରାବାଦ, ନନ୍ଦ ସାହି, କଟକ-୭୫୩୦୦୨, ପ୍ରଚ୍ଛଦପଟ : ବିଜୟ ପ୍ରଧାନ, ଡି.ଟି.ପି.: ୟୁନିଟେକ୍, କଟକ, ମୁଦ୍ରଣ : ସାଥୀ ଅଫସେଟ୍, କଟକ

**MANA MAUJA KATHA** – Translate : Sahadev Pradhan, Publisher : Nirupama Prakasani, Bakharabad, Nanda Sahi, Cuttack-753002, Orissa (India), Cover Design by : Bijoy Pradhan, D.T.P. by : Unitech, Cuttack, Printer : Sathi Offset, Cuttack.

Fifth Edition : **2000**

Price : Rs. **25**

ଏକ ସମୟର କଥା । ଜଣେ ଥିଲେ ... ଏହା କହୁ କହୁ ତୁମେ କହିବ—'ରାଜା' । କିନ୍ତୁ ପିଲେ, ତା ନୁହେଁ । ଏକ ସମୟର କଥା । ଗୋଟିଏ କାଠର ଟୁକୁରା ଥିଲା । ସେ ସେପରି ମୂଲ୍ୟବାନ କାଠ ମଧ୍ୟ ନୁହେଁ, ଅତି ମାମୁଲି କାଠର ଟୁକୁରା, ଯାହାକି ଜାଳେଣି ଯୋଗ୍ୟ ।

ଏହି କାଠ ଟୁକୁରା ଖଣ୍ଡିକ କେଉଁଠୁ ଆସିଲା, ତାହା କେହି ଜାଣନ୍ତି ନାହିଁ । କିନ୍ତୁ ତାହା 'ଅଣ୍ଟେନିୟୋ' ନାମକ ଜଣେ ବୁଢ଼ା ବଢ଼େଇ ଦୋକାନରେ ପଡ଼ିଥିଲା । ଦିନେ ବଢ଼େଇଟି ଖୁବ୍ ଚିନ୍ତିତ ଥାଏ । ସେହି କାଠ ଟୁକୁରା ଉପରେ ତାର ଦୃଷ୍ଟି ପଡ଼ିବାରୁ ସେ ଆନନ୍ଦରେ ବିଭୋର ହୋଇ କହିଲା – ''ବାଃ ! ମୁଁ ମିଛଟାରେ ଏତେ ଚିନ୍ତା କରୁଥିଲି । ଏହି କାଠ ଟୁକୁରା ଖଣ୍ଡିକରେ ଏହି ଛୋଟ ଟେବୁଲର ଗୋଡଟି ଅତି ସହଜରେ ଓ ସୁନ୍ଦର ରୂପେ ତିଆରି ହୋଇପାରିବ ।''

ଏହା କହି ସେ କାଠଟିକୁ ତାଛିବା ପାଇଁ ନିଜର ବାରିସି ବାହାର କଲା । କାଠ ଖଣ୍ଡିକରେ ଚୋଟ ମାରିବାକୁ ଯାଉଛି, ହଠାତ୍ ତାହାର ହାତ ଅଟକିଗଲା । କେହି ଯେପରି ଧୀର ସ୍ୱରରେ କହିଲା – ''ଆହା ! ଏତେ ଜୋରରେ ମାର ନାହିଁ ।''

ବଢ଼େଇ ଚମକିପଡି ଚାରିଆଡକୁ ଚାହିଁଲା । କାହିଁ କେହି ତ ନାହାନ୍ତି । ସେ ଠିକ୍ ଦୋକାନରେ ଅଛି ଓ ଦୁଇ ଚାରୋଟି କାଠ ତିଆରିକରା ଜିନିଷ ଥୁଆ ହୋଇଛି । ପୁଣି ଏ ଶବ୍ଦ କେଉଁଠୁ ଶୁଭିଲା ? ଏହା ଭାବି ସେ କିଛି ସମୟ ଚିନ୍ତା କଲା । ତା'ପରେ ସେ କାଠ ତାଛିବା ପାଇଁ ପୁଣି ବାରିସିକୁ ଶକ୍ତ କରି ମାରିଲା । କିନ୍ତୁ ପୁଣି ସେହି ଶବ୍ଦ । କେହି ଯେପରି କାନ୍ଦ କାନ୍ଦ ସ୍ୱରରେ କହୁଥାଏ– ''ଓଃ, ଓଃ, ଖୁବ୍ କାଟୁଛି ।''

ଏଥର ବଢ଼େଇ ଆଶ୍ଚର୍ଯ୍ୟ ହେଲା । ଭୟରେ ତା' ଆଖିର ପଲକ ପଡିଲା ନାହିଁ । ଏ କିଏ ? କୌଣସି ଛୋଟ ଶିଶୁର କଣ୍ଠସ୍ୱର ପରି ଜଣାପଡୁଛି, କିନ୍ତୁ ଆଖପାଖରେ କେହି ତ ନାହାନ୍ତି । ଏଥର ସେ ରାଗିଯାଇ ଶୀଘ୍ର ଶୀଘ୍ର ବାରିସି ଚଳାଇଲା । ଥରେ

ଦୁଇ ଥର ପୁଣି ସେହି ଶବ୍ଦ ଶୁଣାଗଲା, କିନ୍ତୁ ସେ କୌଣସି ଆଡେ ଦୃଷ୍ଟି ଦେଲା ନାହିଁ । କାଠର କେତେ ଅଂଶ ଛେଲି ତାକୁ ଚିକ୍‌କଣ କରିବା ପାଇଁ ପାଲିସ୍ କାଗଜ ଘଷିଲା । ପୁଣି ପୂର୍ବପରି କିଏ ହିଁ... ହିଁ... ହିଁ ହୋଇ ହସି ହସି କହିଲା – ''ଶୀଘ୍ର କାମ ଶେଷ କର, ମୋତେ ଭାରି ସଳସଳ ଲାଗୁଛି ।''

ବଢ଼େଇ କାଠର ଟୁକୁରା ଖଣ୍ଡି ତତ୍‌କ୍ଷଣାତ୍ ଦୂରକୁ ଫିଙ୍ଗିଦେଲା ଏବଂ ବସିବା ସ୍ଥାନରୁ ଉଠି ଠିଆ ହୋଇପଡିଲା । ସେ ଝାଳନାଳ ହୋଇଯାଇଥାଏ । ବର୍ତ୍ତମାନ ସୁଦ୍ଧା ସେ ଠିକ୍ କରିପାରି ନଥାଏ ଯେ ଏହି ଶବ୍ଦ କାଠ ଟୁକୁରା ମଧ୍ୟରୁ ଆସୁଛି କି ଅନ୍ୟ କୋଉଠୁ ଆସୁଛି । ଏତିକିବେଳେ ବାହାରେ କେହି ଜଣେ କବାଟରେ ହାତ ବାଡ଼େଇଲା । ବଢେଇ କହିଲା – ''କିଏ ସେ ? ଆସ ।''

ଲୋକଟି ଶୀଘ୍ର ହସି ହସି ଦୋକାନ ଉପରକୁ ଉଠି ଆସିଲା । ଏହି ଲୋକଟିର ନାମ ଜପେତୋ । କିନ୍ତୁ ଘର ଲୋକେ ତାକୁ ପୋଲେନ୍ଦିନା କହି ଚିଡ଼ାଉଥିଲେ । ଘରେ ପହଞ୍ଚୁ ପହଞ୍ଚୁ ସେ ବଢ଼େଇକୁ ସଲାମ କଲା ଓ କହିଲା –

'ବଢ଼େଇ ଦାଦା, ଆଜି ମୁଁ ଗୋଟିଏ କଥା ଭାବିଛି ।'

'କହ, କି କଥା ?'

'ମୁଁ ଭାବିଛି ଯେ କାଠରେ ଗୋଟିଏ ସୁନ୍ଦର କଣ୍ଢେଇ ତିଆରି କରିବି । ଏପରି ସୁନ୍ଦର କଣ୍ଢେଇଟିଏ ତିଆରି କରିବି, ଯେ କି ନାନାପ୍ରକାର ଖେଳ ଦେଖାଇବ, ନାଚିବ, ଗୀତ ଗାଇବ ଓ ନାନାପ୍ରକାର ମଜା କରିବ । ଏହି କଣ୍ଢେଇଟିକୁ ନେଇ ମୁଁ ସାରା ଦୁନିଆରେ ବୁଲିବି, ଖେଳ ଦେଖାଇବି ଓ ଏହାଦ୍ୱାରା ବେଶ୍ ଦୁଇ ପଇସା ରୋଜଗାର କରିବି । କହିଲ, ଭଲ ହେବ ନା ?'

'ନିଶ୍ଚୟ, ସାବାସ୍ ପୋଲେନ୍ଦିନା'– ଏହି କଥା ସେହି କାଠଟୁକୁରା ଆଡୁ ଧୀର ସ୍ୱରରେ ଶୁଭିଲା ।

ଜପେତୋ ଏହା ଶୁଣି ଖୁବ୍ ବିରକ୍ତ ହେଲା । ସକାଳ ହେଉ ହେଉ ତାକୁ ପୋଲେନ୍ଦିନା କହି ଲୋକଟା ଚିଡ଼ାଉଛି । ତେଣୁ ସେ ରାଗିଯାଇ କହିଲା – 'ତୁମେ ମୋତେ ଚିଡ଼ାଉଛ କାହିଁକି ? ତୁମେ ମୋତେ ପୋଲେନ୍ଦିନା କହୁଛ !'

'ନା, ମୁଁ ତ କହିନାହିଁ ।' ବଢ଼େଇ କହିଲା ।

'ତୁମେ କହି ନାହିଁ ? ତେବେ କଅଣ ମୁଁ କହିଲି ? ତୁମେ ମୋତେ ଚିଡାଉଛ ।'

ନା !

ହଁ ।

ନାହିଁ ତ !

ହଁ, ହଁ ! ଏହିପରି ଉଭୟଙ୍କ ମଧ୍ୟରେ ଝଗଡ଼ା ହେଲା । ଅନେକ ସମୟ ଝଗଡ଼ା ଲାଗିଲା ପରେ ଯେତେବେଳେ କୌଣସି ପ୍ରକାରେ ଦୁହେଁ ଚୁପ୍ ହେଲେ, ସେତେବେଳେ ଢପେଡୋକୁ ଭୁଲାଇବା ପାଇଁ ବଢ଼େଇ କହିଲା – "ହଁ, ତେବେ ତୁମେ କାଠକଣ୍ଢେଇ ତିଆରି କରିବାକୁ ଚାହୁଁଛ ? ଭଲ କଥା । କିନ୍ତୁ କୁହ ତ ତୁମେ ମୋ ପାଖକୁ କାହିଁକି ଆସିଛ ?"

ଖଣ୍ଡିଏ କାଠ ପାଇଁ ।

ହଉ ଏଇ ନିଅ । ବଢ଼େଇ ଖୁସି ହୋଇ କହିଲା ଓ ସେ କାଠ ଟୁକୁରା ଖଣ୍ଡିକ ଉଠାଇ ଆଣିଲା, ଯାହାକୁ କି ସେ ଭୟରେ ଫିଙ୍ଗି ଦେଇଥିଲା । କିନ୍ତୁ ଏତିକିବେଳେ ଗୋଟିଏ ଅତି ଆଶ୍ଚର୍ଯ୍ୟ ଘଟଣା ଘଟିଗଲା । କାଠର ଟୁକୁରା ଖଣ୍ଡିକ ତା ହାତରୁ ଯାଇ ଢପେଡୋ ଗୋଡରେ ବାଡେଇ ହୋଇଗଲା । ଢପୋଡୋ ପାଟିକରି କହିଲା – "ଦାଦା, ଏ କଅଣ କରୁଛ, ତୁମେ ଗୋଡ ଭାଙ୍ଗିଦେବ ନା କଣ ?"

"ନାଇଁ ତ, ମୁଁ ତ କିଛି କରିନାହିଁ ।" ବଢେଇ କହିଲା ।

"କିଛି କରିନାହଁ କହୁଛ । ତୁମେ ଏତେ ଜୋରରେ କାଠଟା ପିଙ୍ଗିଲ ଯେ ମୁଁ ଏତେବେଳ ପର୍ଯ୍ୟନ୍ତ ଛୋଟୋଉଛି ।"

"ନା, ମୁଁ କାଠ ଫିଙ୍ଗି ନାହିଁ । ସେ ଛାଏଁ ଛାଏଁ ଆସି ପଡ଼ିଲା । ଏଥିରେ ମୋର ବା ଦୋଷ କ'ଣ ?"

"କ'ଣ ଦାଦା, ତୁମେ ମଧ୍ୟ ମିଛ କହୁଛ ? ବର୍ତ୍ତମାନ ତ ତୁମେ କାଠ ଫିଙ୍ଗୁଥିଲ ।"

"ମୁଁ ନୁହେଁ, ତୁମେ ମିଛ କହୁଛ ।"

"ତୁମେ ମିଛ କହୁଛ ।"

''ତୁମେ ମିଥ୍ୟାବାଦୀ । ଯାଅ ଏଠାରୁ ।''

ଜପେଟୋ ତରତର ହୋଇ କାଠଟା ଧରି ନିଜ ଘରକୁ ଫେରିଆସିଲା ।

ଜପେଟୋ ଗୋଟିଏ ଏପରି ଘରେ ରହୁଥିଲା, ଯାହା ଘରର ତଳ ମହଲାର ଗୋଟିଏ ଅଂଶ ଓ ତାହା ଅତି ନିର୍ଜନ ଏବଂ ଅନ୍ଧକାରମୟ । ଉପର ମହଲାକୁ ଯାଇଥିବା ସିଡ଼ିଆଡୁ ଯାହା ତଳ ମହଲାର ଗୋଟିଏ ଅଂଶ ଓ ତାହା ଅତି ନିର୍ଜନ ଏବଂ ଅଳ୍ପମାତ୍ର ଆଲୋକ ଆସୁଥାଏ । ଘରେ ଜିନିଷ ବୋଇଲେ ଖଣ୍ଡିଏ ଭଙ୍ଗା ଖଟ ଓ ଖଣ୍ଡିଏ ଭଙ୍ଗା ଚୌକି ଥାଏ । ପୁଣି ଗୋଟିଏ ଗୋଡ଼ ହଲୁଥିବା ଖଣ୍ଡିଏ ଟେବୁଲ ମଧ୍ୟ ଥାଏ । କିନ୍ତୁ... ଯେ ପ୍ରକୃତ ତା' ନୁହେଁ, ଏହା ଏକ ଛବି ମାତ୍ର ।

ଜପେଟୋ ଘରେ ପହଞ୍ଚି ନିଜର ଯନ୍ତ୍ରପାତି ଧରି କାମ କରିବାକୁ ଆସିଲା । କାଠକୁ କାଟିକୁଟି ଓ ତହିଁରେ ପାଲିସ୍ ଦେଇ ସେ ଏକ କଣ୍ଢେଇ ତିଆରି କରିବାକୁ ଚେଷ୍ଟା କରୁଥାଏ । ମଧ୍ୟେ ମଧ୍ୟେ ଭାବୁଥାଏ ଯେ, ''ଏହି କଣ୍ଢେଇକୁ ମୁଁ କି ନାମରେ ଡାକିବି ? ଏହାର ନାମ ମୁଁ ପିନାକିୟୋ ରଖିବି । ଏହା ଜଣେ ବଡ଼ ଧନୀ ଲୋକ ନାମ । ଏହି କାଠ କଣ୍ଢେଇ ମଧ୍ୟ ମୋତେ ପ୍ରଚୁର ଧନ ଦେବ ।''

ପ୍ରଥମେ ସେ କଣ୍ଢେଇଟିର ମୁଣ୍ଡ ତିଆରି କଲା । ତା'ପରେ ବାଳ ଓ ଆଖି ତିଆରି କଲା । ଆଖି ତିଆରି କରୁ କରୁ ସେ ତାକୁ ଦେଖି ଆଶ୍ଚର୍ଯ୍ୟ ହେଲା । ତାର ଆଖି ଦୁଇଟି ଏପରି ବୁଲୁଥିଲା ଯେ, ତାକୁ ପ୍ରକୃତ ଆଖିପରି ଜଣାପଡୁଥାଏ । ସେତେବେଳେ ଆଖି ଦୁଇଟି ତାକୁ ଯେପରି ଏକଲୟରେ ଚାହିଁରହିଥାଏ । ଏହା ଜପେତାକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ କହିଲା – ''କଥା କ'ଣ ? କାଠର ଆଖି ମୋତେ ଏପରି ଚାହିଁ ରହିଛି କାହିଁକି ?''

କୌଣସି ଉତ୍ତର ମିଳିଲା ନାହିଁ । ତା'ପରେ ସେ ପୁଣି ନାକ ତିଆରି କରିବାକୁ ଲାଗିଲା । କିନ୍ତୁ ଦେଖୁ ଦେଖୁ ନାକଟା ଲମ୍ୱା ହୋଇଗଲା । ଏତେ ଲମ୍ୱା ଯେ ଆଉ କୁହାଯାଏନା । ଜପେଟୋ ବାରମ୍ୱାର ତାକୁ କାଟୁଥାଏ । କିନ୍ତୁ ସଙ୍ଗେ ସଙ୍ଗେ ନାକଟା ଲମ୍ୱି ଯାଉଥାଏ । ସେ ବିରକ୍ତ ହୋଇ କଣ୍ଢେଇର ମୁହଁ ତିଆରି କରିବାକୁ ଲାଗିଲା । ବର୍ତ୍ତମାନ ମୁହଁଟି ପୂରାପୂରି ତିଆରି ନ ସରୁଣୁ କଣ୍ଢେଇଟା ହିଁ-ହିଁ-ହିଁ ହୋଇ ହସି ଉଠିଲା ।

"ଚୁପ୍ ହୁଅ । ଏପରି ହସନି !" ଜପେତୋ ତାକୁ କଡ଼ା ସ୍ୱରରେ କହିଲା । ସେ ଭୟରେ ଚୁପ୍ ହୋଇଗଲା । ଜପେତୋ ପୁଣି ନିଜ କାମରେ ଲାଗିଗଲା । ବେକ, କାନ୍ଧ, ପେଟ ଓ ବାହୁ ତିଆରି କରି ସାରିବା ପରେ ତାର ହାତ ତିଆରି କଲା । ଯେତେବେଳେ ହାତ ତିଆରି ହୋଇଗଲା, ସେତେବେଳେ ଏହି ବିଚିତ୍ର କଣ୍ଢେଇ ଜପେତୋର ବାଳ ଟାଣିବାକୁ ଆରମ୍ଭ କଲା । ପୁଣି ସେ ତାର ନକଲି ଟୋପି କାଢ଼ିନେଲା । ଏଥର ଜପେତୋ ପାଟି କରି କହିଲା – 'ଆରେ ! ମୋ ଟୋପି ଦେଇ ଦେ ।'

କିନ୍ତୁ ପିନାକିୟୋ ତାକୁ ଟୋପି ଦେବା ପରିବର୍ତ୍ତେ ନିଜେ ପିନ୍ଧି ପକାଇଲା । ଜପେତୋ ବିରକ୍ତ ହୋଇ ତାକୁ ଦୁଇ ଚାରି ପାହାର ପିଟିଦେଲା । କିନ୍ତୁ ସଙ୍ଗେ ସଙ୍ଗେ ତାକୁ ତା'ର ଉତ୍ତର ମିଳିଗଲା । ଯେତେବେଳେ ଜପେତୋ କଣ୍ଢେଇର ଗୋଡ଼ ତିଆରି କରିବାକୁ ଠୋକର ମାଇଲା, ତତ୍କ୍ଷଣାତ୍ ସେ ତାର ନାକକୁ ଲକ୍ଷ୍ୟକରି ପଦାଘାତ କଲା । ଏପରି ବ୍ୟବହାର ଜପେତୋକୁ ଭାରି ଖରାପ ଲାଗିଲା । କିନ୍ତୁ ପରେ ସେ ଭାବିଲା— "ଆଚ୍ଛା, କିଛି ଚିନ୍ତା ନାହିଁ । ମୁଁ ତାକୁ ପ୍ରହାର କରିଥିଲି । ଏଣୁ ସେ ମୋତେ ପଦାଘାତ କରିଛି ।"

ସେ ପିନାକିୟୋକୁ ଚଲା ଶିଖାଇବାକୁ ଲାଗିଲା । ଦେଖୁ ଦେଖୁ ପିନାକିୟୋ ଚଲା ଶିଖିଗଲା ଏବଂ ଦୌଡ଼ି ଦୌଡ଼ି ବାହାରକୁ ପଳାଇଗଲା । ଜପେତୋ ମଧ ତାର ପଛେ ପଛେ ଧାଇଁଲା । କିନ୍ତୁ ତାକୁ ଧରିପାରିଲା ନାହିଁ । କାରଣ ସେ ଖୁବ୍ ଶୀଘ୍ର ଶୀଘ୍ର ପଳାଉଥାଏ । ଜପେତୋ ଧରଧର ବୋଲି ଡାକ ପକାଇଲା । କିନ୍ତୁ ଲୋକେ ତାକୁ ଧରିବା ପରିବର୍ତ୍ତେ ଉଭୟଙ୍କ ଏହି ରହସ୍ୟ ଦେଖିବାକୁ ଲାଗିଲେ । କାଠର ଗୋଟିଏ କଣ୍ଢେଇ ଏପରି ଦୌଡୁଥିବାର ଦେଖି ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ହସିବାକୁ ଲାଗିଲେ ।

ଏହି ଗଣ୍ଡଗୋଳ ଜଣେ ପୁଲିସ୍ ଶୁଣିଲା । ସେ ପିନାକିୟୋକୁ ଅଟକାଇଲା । ପିନାକିୟୋ ତାର ଗୋଡ଼ତଳେ ଗଳି ପଳାଇବା ପାଇଁ ଚେଷ୍ଟା କଲା, କିନ୍ତୁ ପୁଲିସ୍ ତାର ଲମ୍ୱା ନାକକୁ ଧରି ପକାଇଲା । ଏତିକିବେଳେ ଜପେତୋ ମଧ ସେଠାରେ ପହଞ୍ଚିଗଲା । ସେ ଗର୍ଜନ କରି ପିନାକିୟୋକୁ କହିଲା— "ଚାଲ, ମୁଁ ତୁମ୍ଭର କାନଧରି ନେଇଯିବି ।"

ଏହା କହି ସେ ତାର କାନ ଧରିବାକୁ ହାତ ବଢ଼ାଇ ଯାହା ଦେଖିଲା, ସେଥିରେ ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲା । କାରଣ ତାର କାନ ନଥିଲା । ବର୍ତ୍ତମାନ ସେ ନିଜର

ଭ୍ରମ ବୁଝିପାରିଲା ଯେ ସେ ପିନାକିୟୋର କାନ ତିଆରି କରି ନାହିଁ । ତେଣୁ ସେ ତାର ବେକ ଧରି ଟଣାଓଟରା କରିବାକୁ ଲାଗିଲା । ଏତେ ଲୋକଙ୍କ ଆଗରେ ଏହି ଅପମାନ ପିନାକିୟୋକୁ ଖରାପ ଲାଗିଲା । ସେ ସୁଁ ସୁଁ ହୋଇ କାନ୍ଦି କାନ୍ଦି ତଳେ ଗଡ଼ିଗଲା । ସେତେବେଳକୁ ସେଠାରେ ଅନେକ ଲୋକ ଜମିଯାଇଥିଲେ । ସେମାନଙ୍କର ତା' ପ୍ରତି ଦୟା ଆସିଲା ।

ଜଣେ କହିଲା— ''ବିଚରା ତ କାଠର କଣ୍ଢେଇ । ସେ ଘରକୁ ଯିବାପାଇଁ ମଙ୍ଗିଲା ନାହଁ ତ କ'ଣ ବା ଖରାପ କଲା । ଏହି ବୁଢ଼ା ତାକୁ ମାରି ପକାଇବ ।'' ଲୋକେ ପୁଲିସ୍‌କୁ ବୁଝାଇ ସୁଝାଇ ପିନାକିୟୋର ଜୀବନରକ୍ଷା କରିବା ପାଇଁ କହିଲେ । ପୁଲିସ୍ ପିନାକିୟୋକୁ ଛାଡ଼ିଦେଲା ଓ ଲୋକଙ୍କ ଅନୁରୋଧରେ ଜପେଟୋକୁ ଗିରଫ କରିନେଲା । ସେ ଗଡ଼ିବାକୁ ଲାଗିଲା । କିନ୍ତୁ କେହି ତାର କଥା ଶୁଣିଲେ ନାହିଁ । ପୁଲିସ ତାକୁ ଜେଲ୍‌କୁ ନେଇଗଲେ । ସେ କାନ୍ଦି କାନ୍ଦି କହିଲା— ଆରେ ମୂର୍ଖ ବାଳକ ! ତୁ କଣ କଲୁ ! ତୁ ଏତକ ବୁଝିପାରିଲୁ ନାହିଁ ଯେ ମୁଁ ତୋତେ କେତେ କଷ୍ଟରେ ତିଆରି କରିଛି । ମୁଁ ତୋତେ ଭଲରୂପେ ଗଢ଼ିବା ପାଇଁ କେତେ ଚେଷ୍ଟା କରିଛି । କିନ୍ତୁ ତୁ ତ ପ୍ରଥମରୁ ଖରାପ ହେଲୁଣି ।

କିନ୍ତୁ ପିନାକିୟୋ ଏହା ଶୁଣିବା ପାଇଁ ସେଠାରେ ରହିଲା ନାହିଁ । ସିପାହି ତାକୁ ଛାଡ଼ିବା ମାତ୍ରେ ସେ ସେଠାରୁ ଦୌଡ଼ି ଦୌଡ଼ି ପଳାଇଲା । ଦୌଡ଼ି ଦୌଡ଼ି ସେ ପୁଣି ଘରକୁ ଫେରିଆସିଲା । ଘରର ଦରଜା ଖୋଲା ଥିଲା, କିନ୍ତୁ ଘରେ କେହି ନଥିଲେ । ସେ ଘର ଭିତରକୁ ପଶିଯାଇ ଶାନ୍ତିରେ ନିଶ୍ୱାସ ମାରିଲା । ବିଶ୍ରାମ ନେବାପାଇଁ ତଳେ ବସିପଡ଼ିଲା ।

ଏଇ ସମୟରେ ଗୋଟିଏ ଝିଙ୍କାରି ନିକଟକୁ ଆସି ଗୀତ ଗାଇବାକୁ ଲାଗିଲା । ପିନାକିୟୋ ରାଗିଯାଇ କହିଲା— '' ତୁମେ ବକ୍ ବକ୍ କରନାହିଁ । ଏଠାରୁ ଚାଲିଯାଅ । ଏ ମୋର ଘର ।''

ଝିଙ୍କାରି ଆଖି ଦେଖାଇ କହିଲା— ''କ'ଣ, ତୁମେ ଜାଣ ମୁଁ ଏହି ଘରେ ଶହେ ବର୍ଷ ହେଲା ରହିଅଛି । ତଥାପି ମୁଁ ବର୍ତ୍ତମାନ ଯାଉଛି, କିନ୍ତୁ ମୁଁ ତୁମକୁ ଗୋଟିଏ ବଡ଼କଥା କହିବାକୁ ଚାହୁଁଛି । ଯେଉଁ ପିଲା ଘରୁ ଏପରି ପଳେଇଯାଏ, ସେ ଭଲ

ପିଲା ନୁହେଁ । ସେ ଦୁନିଆରେ କୌଣସି କାମ କରିପାରେ ନାହିଁ । ସେମାନଙ୍କୁ ପଛରେ ଅନୁତାପ କରିବାକୁ ପଡ଼େ ।''

ପିନାକିୟୋ ହସି ହସି କହିଲା— ''ଯାଅ, ତୁଛାଟାରେ ମୋତେ ବିରକ୍ତ କର ନାହିଁ । ଏମାନେ ପଢ଼ିବା ପାଇଁ ମୋତେ ସ୍କୁଲ ପଠାଇବେ । କିନ୍ତୁ ସେଥିରେ ମୋର ଇଚ୍ଛା ନାହିଁ । ମୁଁ ତ ଖେଳିବାକୁ ଚାହେଁ ।''

ଝିଙ୍କାରି କହିଲା— 'ତୁମେ ଗୋଟିଏ କାଠର କଣ୍ଢେଇ । ତୁମର ମୁଣ୍ଡ କାଠରେ ତିଆରି ।' ଏହାଶୁଣି ପିନାକିୟୋ ରାଗିଗଲା । ସେ ଗୋଟାଏ ହାତୁଡ଼ି ଉଠାଇ ଝିଙ୍କାରି ଆଡ଼େ ଫିଙ୍ଗିଲା, କିନ୍ତୁ ହାତୁଡ଼ିଟା ତାକୁ ମାରିବାପାଇଁ ଫିଙ୍ଗି ନ ଥିଲା, ତାକୁ ଘରୁ ତଡ଼ି ଦେବାପାଇଁ । କିନ୍ତୁ ହାତୁଡ଼ିଟା ତାର ମୁଣ୍ଡରେ ବାଜିବାରୁ ସେ ମରିଗଲା ।

ପିନାକିୟୋକୁ ଭାରି ଦୁଃଖ ହେଲା । କିନ୍ତୁ ସେତେବେଳେ ତାକୁ ଏତେ ଭୋକ କରୁଥିଲା ଯେ ଦୁଃଖ କରିବାକୁ ତାର ସମୟ ନଥିଲା । ସେ ଦେଖିଲା ଯେ ତା' ହାତରେ ଗୋଟିଏ ଜିନିଷ ଅଛି । ଏ କଅଣ ! ଏହା ତ ଗୋଟିଏ ଚିତ୍ର । ଏହା ଦେଖି ତା' ମନରେ ଭାରି ଦୁଃଖ ହେଲା । ଦୁଃଖ ସଙ୍ଗେ ସଙ୍ଗେ ତାର କ୍ଷୁଧା ମଧ ବଢ଼ିବାକୁ ଲାଗିଲା । ସେ ଘରର କନ୍ଦିବିକନ୍ଦି ଖୋଜିଲା, କିନ୍ତୁ କୌଣସି ଖାଇବା ଜିନିଷ ପାଇଲା ନାହିଁ ।

ନିରାଶ ହୋଇ ସେ ପୁଣି ଘରର ଏଣେତେଣେ ଖୋଜିବାକୁ ଲାଗିଲା । ହଠାତ୍ ତାକୁ ଗୋଟିଏ କୁକୁଡ଼ା ଅଣ୍ଡା ମିଳିଗଲା । ଏଥର ସେ ଖୁସିରେ ନାଚିଉଠିଲା ଓ ଭାବିଲା— 'ଆଚ୍ଛା, ଏ ଅଣ୍ଡାରେ କଅଣ ତିଆରି କରିବି ? ହଁ, ଆମ୍‌ଲେଟ୍ ।' ସେ ନିଆଁ ଜଳାଇ ଅମ୍‌ଲେଟ୍ ତିଆରି କରିବାକୁ ବସିଲା । କୁକୁଡ଼ା ଅଣ୍ଡାକୁ ଫଟାଇଦେଇ ଦେଖେ ତ ସେଥିରୁ ଗୋଟିଏ ଧଳା ରଙ୍ଗର ଛୁଆ ନାଚି ନାଚି ବାହାରି ଆସିଲା । ଛୁଆଟି ଅତି ଆଦରରେ ପିନାକିୟୋକୁ ସଲାମ କଲା ଓ କହିଲା—'ପିନାକିୟୋ ସାହେବ୍ ! ଅଣ୍ଡା ଫୁଟାଇବାରେ କୌଣସି କଷ୍ଟ ହୋଇନାହିଁ ତ ? ଆଚ୍ଛା, ମୁଁ ଯାଉଛି ।' ଏହା କହି ସେ ଡେଣା ଫଡ଼୍ ଫଡ଼ କରି ଝରକାବାଟେ ବାହାରକୁ ଉଡ଼ିଗଲା ।

ବିଚରା କାଠ କଣ୍ଢେଇ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ । ଭୋକରେ ତାର ହଂସା ଉଡୁଥାଏ । ସେ କାନ୍ଦ କାନ୍ଦ ହୋଇ କହିଲା— 'ଯଦି ଏହି ସମୟରେ ମୋର ବାପା ଥାଆନ୍ତେ, ତେବେ କଅଣ ମୁଁ ଏପରି ଭୋକରେ ମରୁଥାନ୍ତି ।''

ଘରେ ତାକୁ କିଛି ଖାଇବାକୁ ନ ମିଳିବାରୁ ସେ ଭାବିଲା— ''ରାସ୍ତାକୁ ଯାଏ, ହଠାତ୍ ଯଦି କୌଣସି ଭଲଲୋକ ମିଳିଯାଏ, ତେବେ ତା' ଠାରୁ କିଛି ମାଗି ଖାଇବି ।'

ଶୀତ ଦିନ । ବାହାରେ ବରଫମିଶା ପବନ ବହୁଛି । ସମୟେ ସମୟେ ଚିକ୍ ଚିକ୍ କରି ବିଜୁଳି ମାରୁଛି । ପବନରେ ଗଛଗୁଡ଼ିକ ଦୋହଲୁଛି । ପିନାକିୟୋ ଝଡ଼ବର୍ଷାକୁ ଖୁବ୍ ଭୟ କରେ । କିନ୍ତୁ ସେତେବେଳେ ତାକୁ ଏତେ ଭୋକ ଲାଗୁଥାଏ ଯେ, ସେ ଝଡ଼ ତୋଫାନକୁ ପରୁଆ ନକରି ଘରୁ ବାହାରିପଡ଼ିଲା ଓ ଗ୍ରାମ ଆଡ଼କୁ ଦୌଡ଼ିଲା । କିନ୍ତୁ ସେଠାକୁ ଯାଇ ଆହୁରି ହତାଶ ହେଲା । ଘରର କବାଟ ଓ ଝରକା ବନ୍ଦ ଥିଲା । ରାସ୍ତା ଓ କନ୍ଦି ଶୂନ୍‌ଶାନ୍ ଥିଲା । ଏପର୍ଯ୍ୟନ୍ତ ଗୋଟିଏ କୁକୁର ମଧ ତାକୁ ଦେଖି ନଥାଏ । ଶେଷରେ ପିନାକିୟୋ ଗୋଟିଏ ଘରର କବାଟରେ ହାତ ବାଡ଼େଇବାକୁ ଆରମ୍ଭ କଲା । ଜଣେ ବୃଦ୍ଧଲୋକ ଝରକାରେ ମୁହଁ ଦେଖାଇ ରାଗରେ ପାଟିକରି କହିଲା—'କଅଣ ? ଏତେ ରାତିରେ କଅଣ ମାଗିବାକୁ ଆସିଛୁ ?'

'ଦୟାକରି ମୋତେ କିଛି ଖାଇବାକୁ ଦିଅନ୍ତୁ ।'

'କଅଣ, ଖାଇବାକୁ ? ଆଚ୍ଛା ଦେଉଛି ରହ ।' ବୁଢ଼ା କହିଲା । ସେ ଭାବିଲା— 'ଯଦି ଏ କୌଣସି ଦୁଷ୍ଟ ପ୍ରକୃତିର ପିଲା ହୋଇଥିବ, ଜାଣିଶୁଣି ଦୁଷ୍ଟାମି କରିବାକୁ ଆସୁଥିବ, ତେବେ ଏହାର ବୁଦ୍ଧି ପରୀକ୍ଷା କରିବାକୁ ହେବ ।' ଅଳ୍ପ ସମୟରେ ସେ ପୁଣି ଝରକା ପାଖକୁ ଫେରିଆସିଲା ଓ କହିଲା—'ନିଅ, ତୁମ ଟୋପି ଦେଖାଅ ।'

ପିନାକିୟୋ ଯେତେବେଳେ ନିଜର ଟୋପି ଖୋଲି ଦେଖାଇଲା ସେତେବେଳେ ହଠାତ୍ ତା' ଉପରେ ବାଲ୍‌ଟିଏ ଥଣ୍ଡା ପାଣି ଆସି ପଡ଼ିଲା । ସେ ପାଣିରେ ସେ ତିନ୍ତିଗଲା । ଉପରକୁ ଚାହିଁ ଦେଖେ ତ ବୁଢ଼ା ଝରକା ବନ୍ଦକରି ଚାଲିଗଲାଣି । ବିଚରା ଥଣ୍ଡାରେ ଥରିବାକୁ ଲାଗିଲା । ଏକେତ ସେ ଭୋକିଲା ଥିଲା, ତା'ପରେ ପୁଣି ଥଣ୍ଡାପାଣି । ପିନାକିୟୋ ଆଖିରୁ ଲୁହ ବୋହିବାକୁ ଲାଗିଲା । ସେ ଆଉ କଣ କରିବ ! ଦଉଡ଼ି ଦଉଡ଼ି ଘରକୁ ପଳାଇଲା ।

ଥଣ୍ଡାରେ ତାର ପାଦ କୋଲ ମାରିଆସୁଥାଏ । ସେ ପାଦ ସେକିବା ପାଇଁ ନିଆଁଆଡ଼କୁ ଗୋଡ଼ ଦେଖାଇ ଶୋଇପଡ଼ିଲା । କିଛି ସମୟ ପରେ ତାକୁ ନିଦ ଲାଗିଗଲା । ସେ ଏତେ ନିଘୋଡ଼ ନିଦରେ ଶୋଇପଡ଼ିଲା ଯେ ଯେତେବେଳେ ତାର କାଠର ଗୋଡ଼ ଜଳିବାକୁ ଲାଗିଲା, ସେତେବେଳ ପର୍ଯ୍ୟନ୍ତ ବି ସେ କିଛି ହେଲେ ଜାଣିପାରିଲା ନାହିଁ ।

ଚଳି ଚଳି ତାର ଗୋଡ଼ ପାଉଁଶ ହୋଇଗଲା । ସକାଳ ହେଲା । ତେବେ ବି ତାର ନିଦ ଭାଙ୍ଗିଲା ନାହିଁ । ହଠାତ୍ ସେ ଶୁଣିବାକୁ ପାଇଲା— କିଏ କବାଟରେ ଠକ୍ ଠକ୍ କରି ଡାକୁଛି । ଆଖି ଖୋଲି ହାଇମାରି ସେ କହିଲା—

କିଏ ସେ ଭାଇ ?

ମୁଁ, ମୁଁ । ଏହା ଜପେଟୋର ଶବ୍ଦ ।

ଓ ବାପା, ତୁମେ ! ଏହା କହି ପିନାକିୟୋ ଯେତେବେଳେ ନାଚି ନାଚି ଠିଆହୋଇ ଯିବାକୁ ବସିଲା, ସେତେବେଳେ ସେ ତଳେ ପଡ଼ିଗଲା । ବର୍ତ୍ତମାନ ସେ ବୁଝିପାରିଲା ଯେ ତାର ଗୋଡ଼ ଦୁଇଟା କୁଆଡ଼େ ଉଭେଇଯାଇଛି । ବାହାରେ ଜପେଟୋ ବାରମ୍ବାର ଶବ୍ଦ କରିବାକୁ ଲାଗିଲା ।

କାଠ କୁଣ୍ଢେଇ ସୁଁ ସୁଁ ହୋଇ କାନ୍ଦି କାନ୍ଦି କହିଲା– ମୁଁ କବାଟ ଖୋଲିପାରୁ ନାହିଁ । ମୋର ଗୋଡ଼ କିଏ ନେଇଯାଇଛି ।

'କିଏ ନେଲା ତୁମର ଗୋଡ଼ ?'

ବିଲେଇ । ପିନାକିୟୋ କୋଣରେ ବସିଥିବା ବିଲେଇକୁ ଲକ୍ଷ୍ୟକରି କହିଲା ।

ଶୀଘ୍ର କବାଟ ଖୋଲ । ଅଯଥା କାହିଁକି ମୋତେ ବିରକ୍ତ କରୁଛ । ଏହାର ଉତ୍ତରରେ ପିନାକିୟୋ କାନ୍ଦିପକାଇଲା । ଶେଷରେ ଜପେଟୋର ବିଶ୍ୱାସ ହେଲା ଯେ, ନିଶ୍ଚୟ କିଛି ନା କିଛି ଘଟିଛି ।

ବଡ଼ କଷ୍ଟରେ ସେ ସେହି ଝରକା ବାଟେ ଘରକୁ ଆସିଲା । ସେ ଅତ୍ୟନ୍ତ ରାଗିଯାଇଥାଏ । କିନ୍ତୁ ଯେତେବେଳେ ଦେଖିଲା ଯେ ସେ ପ୍ରକୃତରେ ତଳେ ପଡ଼ିଛି, ସେତେବେଳେ ତା' ପ୍ରତି ଜପେଟୋର ଦୟା ହେଲା । ତାକୁ ଉଠାଇ ଆଲିଙ୍ଗନ କଲା ଓ କାନ୍ଦି କାନ୍ଦି ପଚାରିଲା—'ବାପ ପିନାକିୟୋ ! ଏ ଗୋଡ଼ ତୁମର ପୋଡ଼ିଗଲା କିପରି ?''

ମୁଁ ଜାଣେନା ବାପା । ବଡ଼ କଷ୍ଟରେ ରାତ୍ରି ଅତିବାହିତ ହେଲା । ପ୍ରଥମେ ତ ମୋତେ ଭୋକ କରୁଥିଲା, ତା'ପରେ ପୁଣି ଝିଙ୍କାରିଟାଏ ଆସି ମୋତେ ବିରକ୍ତ କରୁଥିଲା । ସେ ମୋତେ ଠିକ୍ କଥା କହୁଥିଲା । କିନ୍ତୁ ମୁଁ ରାଗିଯାଇ ହାତୁଡ଼ି ଫିଙ୍ଗିବାରୁ ସେ ମରିଗଲା ।

ଏହିପରି ପିନାକିୟୋ ରାତିସାରା ତାକୁ କାହାଣୀ ଶୁଣାଇଲା ଓ ଶେଷରେ କହିଲା—'ବର୍ତ୍ତମାନ ତ ମୋର ଗୋଡ଼ ନାହିଁ, ମୁଁ କଅଣ କରିବି?' ଏହା କହି ସେ ଆହୁରି ବଡ଼ ପାଟିକରି କାନ୍ଦିବାକୁ ଲାଗିଲା ।

ସେ କାହାଣୀଗୁଡ଼ିକ ଏତେ ଶୀଘ୍ର ଶୀଘ୍ର କହିଗଲା ସେ ଜପେଟୋର ପଲକ ପଡ଼ିଲା ନାହିଁ । ତଥାପି ସେ ନିଜର କ୍ଷୁଧା ଭୁଲିପାରିଲା ନାହିଁ । ସେ ପକେଟରୁ ତିନୋଟି ଆଳୁ ବାହାର କରି ପିନାକିୟୋକୁ ଦେଲା ।

ପିନାକିୟୋ ପଲକ ପକାଉ ପକାଉ ... ତିନୋଟି ବେକର ତଳକୁ ଖସାଇଦେଲା । ଜପେଟୋ ତାକୁ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ । ଗୋଟିଏ... ଧରି ପିନାକିୟୋ କହିଲା— 'ମୁଁ ତ ଏତେବେଳ ପର୍ଯ୍ୟନ୍ତ ଭୋକରେ ରହିଗଲି ।'

କିନ୍ତୁ ବର୍ତ୍ତମାନ ମୋ ପାଖରେ କିଛି ନାହିଁ । ପୁଣି ପିନାକିୟୋ ନିଜର ଗୋଡ଼ପାଇଁ କାନ୍ଦିବାକୁ ଲାଗିଲା ଓ ଜପେଟୋକୁ ବାରମ୍ବାର କହିଲା ଯେ ମୋ ପାଇଁ ନୂଆ ଗୋଡ଼ ତିଆରି କରିଦିଅ ।

କିନ୍ତୁ ଜପେଟୋ ତାକୁ ଶାସ୍ତି ଦେବାକୁ ଚାହେଁ । ଏଣୁ ପ୍ରାୟ ଓଳିଏ ପର୍ଯ୍ୟନ୍ତ ତାକୁ କନ୍ଦେଇଲା ଓ କହିଲା—'କଅଣ, ତୁମର ନୂଆ ଗୋଡ଼ ତିଆରି କରିଦେବି ? ତା' ନ ହେଲେ ସୁଯୋଗ ପାଇଲେ ତୁମେ ପୁଣି ପଳାଇବ କିପରି ?'

କାଠ କୁଣ୍ଢେଇ କାନ୍ଦ କାନ୍ଦ ହୋଇ କହିଲା— ନା ନା, ମୁଁ ଆଉ ପଳାଇବି ନାହିଁ । ବର୍ତ୍ତମାନ ପୂର୍ବ ଅପେକ୍ଷା ମୁଁ ଅଧିକ ସାବଧାନ ହୋଇ ରହିବି । ତୁମେ ଯାହା କହିବ ତାହା ହିଁ କରିବି । ସ୍କୁଲକୁ ପଢ଼ିବାକୁ ଯିବି ଓ ଭଲ ପିଲା ହେବି ।

ଏଣୁ ଶୁଣି ଜପେଟୋ ଯେତିକି ଖୁସିହେଲା ସେତିକି ଦୁଃଖ ମଧ କଲା । ସେ କିଛି କହିଲା ନାହିଁ ଓ କାଠର ଦୁଇଖଣ୍ଡି ଟୁକୁରା ଧରି ଗୋଡ଼ ତିଆରି କରିଦେଲା । ପୁଣି ସେ କାଠ କୁଣ୍ଢେଇକୁ କହିଲା—'ତୁମେ ଆଖି ବୁଜ ଓ ଚୁପ୍ ହୋଇ ଶୋଇପଡ଼ ।'

ପିନାକିୟୋ ଆଖି ବନ୍ଦକରି ପଡ଼ିଗଲା ଓ ଶୋଇଲାପରି ବାହାନା କଲା । ଜପେଟୋ ନିଜ କୋଳରେ ଥୋଇ ତାର ଆଣ୍ଠୁରେ ନୂଆ ଗୋଡ଼ ଦୁଇଟି ଲଗାଇଦେଲା । ସେ ଏପରି ଯତ୍ନ ସହକାରେ ଲଗାଇଲା ଯେ ତାକୁ ଗୋଡ଼ ଦୁଇଟି ନୂଆପରି ଜଣାଗଲା ନାହିଁ । ନୂଆ ଗୋଡ଼ ମିଳିବାରୁ ପିନାକିୟୋ ଖୁସିରେ ଠିଆ ହୋଇ ଘରେ ନାଚିବାକୁ

ଲାଗିଲା । କହଲା—ବର୍ତ୍ତମାନ ମୁଁ ନିଶ୍ଚୟ ସ୍କୁଲ୍‌କୁ ଯିବି । କିନ୍ତୁ... ମୋ ପାଖରେ ତ ଭଲ ଲୁଗା ନାହିଁ ।

ଜପେଟୋ ବଡ଼ ଗରିବ ଲୋକ । ତା' ପାଖରେ ପଇସା ନ ଥାଏ, କିନ୍ତୁ କାଠ କୁଣ୍ଢେଇ ସ୍କୁଲକୁ ଯିବାକୁ ଚାହୁଁଛି, ତେଣୁ ସେ ଫୁଲବାଲା କାଗଜ କାଟି ତା' ପାଇଁ ନୂଆଲୁଗା ତିଆରି କରିଦେଲା । ଗୋଡ଼ରେ କାଠ ଛେଲିର ଜୋତା ପିନ୍ଧାଇଦେଲା ଓ ରୋଟିର ଟୁକୁରାକୁ କାଟିକୁଟି ଟୋପି ତିଆରି କରିଦେଲା । ପିନାକିୟୋ ଏହାକୁ ପିନ୍ଧି ବହୁତ ଖୁସି ହେଲା ଓ କହିଲା—'ବର୍ତ୍ତମାନ ତ ମୁଁ ପୂରା ନବାବ ହୋଇଗଲିଣି, କିନ୍ତୁ ଖାଲି ହାତରେ ପଢ଼ିବାକୁ ଯିବି କିପରି ? ଖଣ୍ଡେ ବହି ତ ଦରକାର !'

ନିଶ୍ଚୟ, କିନ୍ତୁ ବହି କିପରି ମିଳିବ ?

କାହିଁକି ? ଖୁବ୍ ମିଳିବ । ବହିବାଲା ପାଖକୁ ଯାଇ କିଣି ଆଣିବା ।

ପୁଣି ପଇସା କେଉଁଠାରୁ ଆସିବ ? ମୋ ପାଖରେ ପଇସା ନାହିଁ । ଜପେଟୋ ଖୁବ୍ ଦୁଃଖ କରି କହିଲା ।

ପିନାକିୟୋ ତ, ଭାରି ଆନନ୍ଦମନା ଥିଲା । କିନ୍ତୁ ଶେଷରେ ପିତାଙ୍କ ଦରିଦ୍ରାବସ୍ଥା ଦେଖି ତାକୁ ଭାରି ଦୁଃଖ ଲାଗିଲା ।... ଜପେଟୋ କିଛି ସମୟ ପର୍ଯ୍ୟନ୍ତ ଚିନ୍ତାକଲା ଓ ପୁଣି ଠିଆହୋଇ କହିଲା—ଆଚ୍ଛା ରହ, ବର୍ତ୍ତମାନ ବହି ନେଇକରି ଆସୁଛି । ଏହା କହୁ କହୁ ସେ ତାର ଫଟା କୋଟ ପିନ୍ଧି ବାହାରିପଡ଼ିଲା ।

କିଛି ସମୟ ପରେ ସେ ଫେରିଆସିଲା । ତା' ହାତରେ ଥାଏ ପିନାକିୟୋ ପାଇଁ ଖଣ୍ଡିଏ ବହି । କିନ୍ତୁ ତାର କୋଟ ନାହିଁ, ସେ କେବଳ ଖଣ୍ଡିଏ କାମିଜ ପିନ୍ଧିଛି । ବାହାରେ ନାହିଁନଥିବା ବରଫ ପଡ଼ିଥାଏ । ପିନାକିୟୋ ପଚାରିଲା—'କୋଟ କ'ଣ ହେଲା ?'

'ମୁଁ ବିକିଦେଇଛି । ମୋତେ ଖୁବ୍ ଗରମ ଲାଗୁଥିଲା । ଏହା କହି ସେ ମୁରୁକିହସା ଦେଲା ।'

ପିନାକିୟୋ ସେତେବେଳେ ବୁଝିପାରିଲା ଯେ ନିଜର କୋଟ ବିକ୍ରିକରି ସେ ତା' ପାଇଁ ବହି ଆଣିଛି । ସେ ନିଜକୁ ଆୟତ୍ତ କରି ନ ପାରି ତା' ବାପାର ବେକରେ

ଓହଳିପଡ଼ି ତାକୁ କୁଣ୍ଢାଇ ଧରିଲା । ପୁଣି ହଠାତ୍ ବରଫ ବର୍ଷା ବନ୍ଦ ହୋଇଗଲା । ପରେ ସେ ନିଜର ବହି ଧରି ସ୍କୁଲ୍‌କୁ ଚାଲିଗଲା । ରାସ୍ତାରେ ସେ ନାନା କଥା ଚିନ୍ତା କରୁଥାଏ । ସେ ଭାବୁଥାଏ ଆଜି ମୁଁ ସ୍କୁଲରେ ପଢ଼ା ଶିଖିବି, କାଲି ଲେଖା ଶିଖିବି ଓ ପଅରଦିନ ଅଙ୍କ ଶିଖିବି । ଏହିପରି ଲେଖାପଢ଼ି କରି ମୁଁ ଖୁବ୍ ଧନ କମାଇବି । ଯେତେବେଳେ ମୋତେ ପଇସା ମିଳିବ, ମୁଁ ବାପାଙ୍କ ପାଇଁ ସୂତାର କୋଟ କିଣି ଆଣିବି । ବାଃ— ସୂତାର କୋଟ କାହିଁକି ? ମୁଁ ତ ବାପାଙ୍କ ପାଇଁ ସୁନା ଓ ଚାନ୍ଦିର କୋଟ ମଗାଇବି । ସେଥିରୁ ହୀରାର ବୋତାମ ଲାଗିଥିବ । ଦେଖ ତ, ସେ ମୋ ପାଇଁ କୋଟ ବିକ୍ରି କରି ବହି କିଣି ଆଣିଛନ୍ତି । ବର୍ତ୍ତମାନ କୋଟ ଅଭାବରୁ ଶୀତରେ ଥରୁଛନ୍ତି ।

ଏହିପରି ଭାବି ଭାବି ସେ ଚାଲିଥାଏ । ହଠାତ୍ ତାକୁ ବଂଶୀ ଓ ଢୋଲର ଶବ୍ଦ ଶୁଭିଲା । ପେଁ...ପେଁ...ପେଁ । ଢୁ...ଢୁ...ଢୁ ।

ପିନାକିୟୋ ଠିଆହୋଇ କାନେଇଲା । ବାସ୍ତବିକ କେଉଁଠି ଢୋଲ ବାଜୁଥାଏ । ସେ ଭାବିଲା—'ବର୍ତ୍ତମାନ କଅଣ କରିବାକୁ ହେବ । ଢୋଲ କେଉଁଠି ବାଜୁଛି ଜଣାପଡୁ ନାହିଁ । କେଉଁଠି ବୋଧହୁଏ ଖେଳ ହେଉଛି । ଏଣେ ମୋତେ ସ୍କୁଲ ଯିବାକୁ ପଡୁଛି । ବହୁ ସମୟ ପର୍ଯ୍ୟନ୍ତ ଭାବି ଭାବି ସେ କିଛି ସ୍ଥିର କରିପାରିଲା ନାହିଁ ଯେ ବର୍ତ୍ତମାନ କଅଣ କରିବାକୁ ହେବ । ଶେଷରେ ସେ ନିଜ ମନକୁ ବୁଝାଇ କହିଲା—'ଆଜି ମୁଁ ଢୋଲ ଶୁଣିବାକୁ ଯିବି । କାଲି ସ୍କୁଲ ଯିବି ।' ପୁଣି ସେ ଯେଉଁ ଦିଗରୁ ଢୋଲର ଶବ୍ଦ ଶୁଭୁଥିଲା ସେହି ଦିଗକୁ ଦୌଡ଼ିଲା ।

ଶେଷରେ ସେ ଏକ ଛୋଟ ସ୍ଥାନରେ ପହଞ୍ଚିଲା । ସେଠାରେ ଖୁବ୍ ଚହଳ ଥାଏ । ମଝିରେ ଗୋଟିଏ ବଡ଼ ତମ୍ବୁ ଟଣା ହୋଇଥାଏ । ସେଥିରେ ନାନାପ୍ରକାର ଚିତ୍ର ତିଆରି ହୋଇଥାଏ । ତମ୍ବୁ ଆଗରେ ଦର୍ଶକମାନଙ୍କର ଭାରି ଭିଡ଼ ହୋଇଥାଏ । ପିନାକିୟୋ ଏକ ବାଳକକୁ ପଚାରିଲା—'କଅଣ ମହାଶୟ, ଏ ତମ୍ବୁ ମଧ୍ୟରେ କଅଣ ହେଉଛି ?'

'ତୁମେ ପଢ଼ିକରି ଦେଖନା, ଏଥିରେ କଣ ଲେଖା ହୋଇଛି ।'

'ହଁ ହଁ, ମୁଁ ପଢ଼ିପାରେ । କିନ୍ତୁ କେଜାଣି କାହିଁକି ଆଜି ମୁଁ ପଢ଼ିପାରୁ ନାହିଁ ।

'ହୁଁ ଏହି କଥା । ବର୍ତ୍ତମାନ ମୁଁ ପଢ଼ିଦେଉଛି । ଏଥିରେ ଲେଖାଅଛି—'କାଠ କୁଣ୍ଢେଇ ନାଟକ କମ୍ପାନୀ ।'

'ଖେଳ କଅଣ ଆରମ୍ଭ ହୋଇଯାଇଥିବ ?' ପିନାକିୟୋ ଉତ୍ସାହିତ ହୋଇ ପଚାରିଲା ।

'ନା, ଆରମ୍ଭ ହେବ ?'

'ଭିତରକୁ ଯିବାପାଇଁ କେତେ ଟିକଟ ?'

'ଦୁଇ ଅଣା'

ନାଟକ ଦେଖିବା ପାଇଁ ପିନାକିୟୋର ଭାରି ଇଚ୍ଛା ହେଲା । କିନ୍ତୁ ତା' ପାଖରେ ପଇସା ନଥାଏ, ବର୍ତ୍ତମାନ କରାଯିବ କଅଣ ?

ଶେଷରେ ସେ ନିର୍ଲଜ୍ଜଭାବେ ସେହି ବାଳକକୁ କହିଲା—'ତୁମେ ମୋତେ ଦୁଇଅଣା ପଇସା ଉଧାର ଦେବ କି ?'

'ହଁ ହଁ, ମୁଁ ତୁମକୁ ଉଧାର ଦେଇପାରେ ।' ସେହି ବାଳକ ନିଜ ପକେଟରୁ ଗୋଟିଏ ଦୋଅଣି ବାହାର କରି କହିଲା—'କିନ୍ତୁ କାହିଁକି କେଜାଣି ମୁଁ ଆଜି ତୁମକୁ ଦେଇ ପାରୁନାହିଁ ।'

'ଆଚ୍ଛା, ନ ହେଲେ ତୁମେ ଦୁଇଅଣା ମୂଲ୍ୟରେ ମୋର ଏହି କୋଟ ଖଣ୍ଡିକ କିଣିନିଅ ।' ପିନାକିୟୋ କହିଲା ।

'ତୁମର ଏହି କାଗଜର କୋଟକୁ ମୁଁ କଅଣ କରିବି ? ଏ ତ ପାଣିରେ ତିନ୍ତିଯିବ ।'

ବର୍ତ୍ତମାନ ପିନାକିୟୋ କଅଣ କରିବ ସ୍ଥିର କରିପାରିଲା ନାହିଁ । ସେ ଖେଳ ଦେଖିବାକୁ ଇଚ୍ଛା କରୁଥାଏ । ଏତେଦୂର ଆସି ଖେଳ ନ ଦେଖି ସେ କିପରି ଫେରିଯିବ ? ସେ ବ୍ୟସ୍ତ ହୋଇ କହିଲା—''ଆଚ୍ଛା, ତୁମେ ମୋର ବହି ନେଇନିଅ ଓ ମୋତେ ଦୁଇଅଣା ପଇସା ଦିଅ ।'

'ମୁଁ ବହି କଅଣ କରିବି ? ମୋର ତ ଅନେକ ବହି ଅଛି । ତୁମେ କଅଣ ମନେ କରିଛ ଯେ ମୋ ପାଖରେ ବହି ନାହିଁ ?' ସେ ବାଳକ କହିବାକୁ ଲାଗିଲା ।

ସେତେବେଳେ ଜଣେ ଫେରିବାଲା ଦୁହିଁଙ୍କର କଥା ଶୁଣୁଥାଏ । ସେ ନିକଟକୁ ଆସି କହିଲା—'ଆଣ କୋଉଠି ବହି ଅଛି, ମୁଁ ଦୁଇ ଅଣା ଦେଉଛି ।'

ପିନାକିୟୋ ସଙ୍ଗେ ସଙ୍ଗେ ତା ହାତକୁ ବହିଟି ବଢ଼ାଇ ଦେଲା । ସେତେବେଳେ ସେ ଭୁଲିଗଲା ଯେ ଏହି ବହି ଖଣ୍ଡିକ କିଣିବା ପାଇଁ ତାର ବାପାଙ୍କୁ ଏହି ଶୀତଦିନେ ନିଜର କୋଟ ବିକିବାକୁ ପଡ଼ିଥିଲା ।

ଟିକଟ କାଟି ପିନାକିୟୋ ତମ୍ବୁ ଭିତରେ ପହଞ୍ଚିଲା । କିନ୍ତୁ ସେ ତମ୍ବୁ ଭିତରକୁ ଆସି ଠିକ୍ ସ୍ଥାନରେ ବସି ନାହିଁ, ସେଠାରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା ।

ଖେଳ ଆରମ୍ଭ ହୋଇଯାଇଥାଏ । ଏତିକିବେଳେ ଦୁଇଟି କାଠ କୁଣ୍ଢେଇଙ୍କର ଯୁଦ୍ଧ ଦେଖା ହେଉଥାଏ । ଦୁହେଁ ପରସ୍ପରକୁ ଗାଳି ଦେଉଥାନ୍ତି ଓ ଝଗଡ଼ା କରୁଥାନ୍ତି । ଏତିକିବେଳେ ହଠାତ୍ ହାରଲେ ନାମକ ଗୋଟିଏ କାଠ କୁଣ୍ଢେଇର ଦୃଷ୍ଟି ପିନାକିୟୋ ଉପରେ ପଡ଼ିଲା ଓ ସେ ଖେଳ ବନ୍ଦ କରି ଏକଲୟରେ ପିନାକିୟୋ ଆଡ଼କୁ ଚାହିଁବାକୁ ଲାଗିଲା । ଏହା ଦେଖି ନେଲ୍ଲୋ ନାମକ କାଠକୁଣ୍ଢେଇ ମଧ ସେହି ଆଡ଼କୁ ଚାହିଁଲା ଓ ପୁଣି ଦୁହେଁ ପାଟିକରି କହିଲେ— 'ଏ ତ ଆମ ପିନାକିୟୋ ! ପିନାକିୟୋ ! ପିନାକିୟୋ !'

ଏତିକିବେଳେ ପରଦାର ପଛପଟୁ ଅନ୍ୟ ଏକ କାଠକୁଣ୍ଢେଇ ମୁହଁ ଦେଖାଇ ଖୁସିରେ ପାଟିକରି କହିଲା—'ଆରେ ହଁ, ଏ ତ ପିନାକିୟୋ ।'

ଦେଖୁ ଦେଖୁ କେତେକ କାଠକୁଣ୍ଢେଇ ଗୋଟି ଗୋଟି ହୋଇ ମଞ୍ଚ ଉପରକୁ ଆସିଲେ ଓ ଖୁସିରେ ପାଟିକରି କହିବାକୁ ଲାଗିଲେ—ପିନାକିୟୋ ଆସିଗଲା ! ପିନାକିୟୋ ଆସିଗଲା ! ପିନାକିୟୋ ଆମର ଭାଇ । ପିନାକିୟୋ ଜିନ୍ଦାବାଦ୍ !

କାଠ କୁଣ୍ଢେଇଗୁଡ଼ିକ କୋଳାହଳ କରିବାକୁ ଆରମ୍ଭ କଲେ । ଖେଳ ବନ୍ଦ ହୋଇଗଲା । ସେମାନେ ପିନାକିୟୋକୁ ନିଜ ପାଖକୁ ଡାକିବାକୁ ଲାଗିଲେ । ଶେଷରେ ସେ ମଧ ନିଜକୁ ସଂଯତ କରିପାରିଲା ନାହିଁ । ନିଜ ଭାଇମାନଙ୍କ ସହିତ ମିଶିବା ପାଇଁ ସେ ଧାଇଁଲା ଓ ଡେଇଁପଡ଼ି ସେମାନଙ୍କ ପାଖରେ ଯାଇ ପହଞ୍ଚିଲା । ସେମାନେ ତାକୁ କୁଣ୍ଢେଇ ପକାଇଲେ । କିଏ ତାକୁ କାନ୍ଧରେ ବସାଇଲା ଓ କିଏ ଆଦର କରି ତାର ହାତ ଟାଣିବାକୁ ଲାଗିଲା । କିନ୍ତୁ ଦର୍ଶକମାନେ ତ ଖେଳ ଦେଖିବାକୁ ଆସିଥିଲେ । ସେମାନେ ପାଟିକରି କହିଲେ—'ଖେଳ ଆରମ୍ଭ କର, ଖେଳ ଆରମ୍ଭ କର ।'

କିନ୍ତୁ କାଠ କୁଣ୍ଢେଇଙ୍କ ମଧରୁ ସେମାନଙ୍କ ପ୍ରତି କେହି ଦୃଷ୍ଟି ଦେଲେ ନାହିଁ । ସେମାନେ ପିନାକିୟୋକୁ ଦେଖି ଏତେ ଖୁସି ହୋଇଗଲେ ଯେ କାମ କରିବାକୁ ଆଉ

କାହାରି ଇଚ୍ଛା ହେଲା ନାହିଁ । ପାଟି ଶୁଣି ନାଟକ କମ୍ପାନୀର ମାଲିକ ଦୌଡିଯାଇ ଭିତରେ ପହଞ୍ଚିଲା । ତାର ଆଖି ଦୁଇଟି ବଡ଼ ଓ ନାଲି ଦେଖାଯାଉଥାଏ । ମୁହଁରେ ଲମ୍ବା ଲମ୍ବା ଦାଢ଼ି ଥାଏ । ତାକୁ ଦେଖି ସବୁ କାଠକୁଣ୍ଢେଇମାନେ ଭୟରେ ଥରିବାକୁ ଲାଗିଲେ । ସେ ହାତରେ ଚାବୁକ ଧରିଥାଏ । ଆସ୍ତୁ ଆସ୍ତୁ ସମସ୍ତେ ନୀରବ ହୋଇଗଲେ । ସେ ଖୁବ୍ କର୍କଶ ସ୍ୱରରେ ପିନାକିୟୋକୁ ଗର୍ଜି ଗର୍ଜି କହିଲା– 'ତୁ ଏଠାରେ ଗୋଳମାଳ କରିବା ପାଇଁ କାହିଁକି ଆସିଲୁ ? ତୁ କିଏ ?'

ପିନାକିୟୋ ଡରି ଡରି କହିଲା– 'ନାହିଁ ସାହେବ ! ମୁଁ କିଛି କରି ନାହିଁ । ମୁଁ ତ ଖେଳ ଦେଖିବା ପାଇଁ ଆସିଛି ।'

ଚୁପ୍ ରହ । ମୋ କଥାର ଉତ୍ତର କାହିଁକି ଠିକ୍ ଭାବେ ଦେଉନୁ । ଖେଳ ଶେଷ ହେଲେ ତୋ ଖବର ବୁଝିବି । ଚାଲ୍ ଏଣିକି ଆ । ଏହା କହି ଯାଦୁକର ତାକୁ ଟାଣି ଟାଣି ଅନ୍ୟ ଆଡ଼କୁ ନେଇଗଲା ।

ଖେଳ ଶେଷ ହେଲା । ଯାଦୁକର ନିଜ ରୋଷେଇ ଘରକୁ ଖାଇବା ପାଇଁ ଗଲା । ସେଠାରେ ସେ ଦେଖିଲା ଯେ ଚୁଲା ଖୁବ୍ ଧୀରେ ଧୀରେ ଜଳୁଛି ଓ ଗୋଟିଏ ପୂରା ମେଣ୍ଢା ସିଝୁଛି । ଚୁଲା ଠିକ୍‌ଭାବେ ଜଳୁ ନ ଥାଏ । ତେଣୁ ସେ ପାଟିକରି ହରଲେ ଓ ନେଲୋଙ୍କୁ ଡାକ ପକାଇଲା । ସଙ୍ଗେ ସଙ୍ଗେ ସେମାନେ ନିଜ କାଠଗୋଡ଼କୁ ପିଟି ପିଟି ଦଉଡି ଆସିଲେ । 'ଯାଅ, ସେ କାଠ କୁଣ୍ଢେଇକୁ ନେଇଆସ । ମୁଁ ତାକୁ ଦଉଡ଼ିରେ ବାନ୍ଧି ଗୋଟିଏ ଖୁଣ୍ଟରେ ଟାଙ୍ଗି ରଖିଛି, ମୋର ମନେ ହେଉଛି ଯେ ତାହା ଖୁବ୍ ଶୁଖିଲା କାଠରେ ତିଆରି ହୋଇଛି । ଯଦି ତାକୁ ଜାଳିଦିଏ, ତେବେ ନିଆଁ ବେଶୀ ହେବ ଓ ମେଣ୍ଢା ସିଝିଯିବ ।'

ଯାଦୁକରର ଏପରି ଆଦେଶ ଶୁଣି କାଠକୁଣ୍ଢେଇର ଦୁଇଟି ଡରିଗଲେ ଓ ସେମାନେ ତାର ନାଲି ଆଖି ଦେଖି ତତ୍‌କ୍ଷଣାତ୍ ବାହାରି ପଡିଲେ । ଅଳ୍ପ ସମୟେ ପରେ ସେମାନେ ପିନାକିୟୋକୁ ଟାଣି ରୋଷେଇ ଘରକୁ ନେଇଆସିଲେ । ପାଣି ବାହାରକୁ ବାହାର କରି ଆଣିଥିବା ମାଛ ପରି ସେ ହାତଗୋଡ଼ ଛାଟୁଥାଏ ଓ ଛଟପଟ ହେଉଥାଏ । ସୁଁ ସୁଁ ହୋଇ କାନ୍ଦୁଥାଏ । ପାଟିକରି କହୁଥାଏ–'ବାପା ! ବାପା! ମୋତେ ରକ୍ଷା କର । ମୁଁ ମରିବାକୁ ଚାହେଁ ନାହିଁ ।'

ଯାଦୁକରକୁ ଦେଖିଲେ ଭାରି ଭୟ ଲାଗୁଥାଏ । କିନ୍ତୁ ତାର ମନ ନିର୍ମଳ ଥାଏ । ପିନାକିୟୋକୁ ଏପରି ଛଟପଟ ହେଉଥିବା ଦେଖି ତା ମନରେ ଦୟା ହେଲା । ତେଣୁ ସେ ଛିଙ୍କିବାକୁ ଲାଗିଲା । କାହାରି ପ୍ରତି ଦୟା ହେଲେ ତାଙ୍କୁ ଛିଙ୍କ ମାଡେ । ସେ ପ୍ରଥମେ ଛିଙ୍କ ବନ୍ଦ କରିବା ପାଇଁ ଚେଷ୍ଟା କଲା କିନ୍ତୁ ନ ପାରିବାରୁ ଏତେ ଜୋର୍‌ରେ ଛିଙ୍କି ପକାଇଲା ଯେ କାଠ କୁଣ୍ଢେଇମାନେ ଡରିଗଲେ ଏବଂ ଏଣେତେଣେ ହୋଇଗଲେ ।

ତାକୁ ଛିଙ୍କିବାର ଦେଖି ହରଲେ ପିନାକିୟୋକୁ କହିଲା– 'ନିଅ ଭାଇ, ବଡ଼ ଭାଗ୍ୟ ତୁମର ! ତୁମେ ରକ୍ଷା ପାଇଗଲ । ଯାଦୁକର ଛିଙ୍କିବାର ଉଦ୍ଦେଶ୍ୟ, ତାର ତୁମ ପ୍ରତି ଦୟା ଆସୁଛି ।'

ପିନାକିୟୋ ଭାରି ଖୁସି ହେଲା । କିନ୍ତୁ ତାର ସୁଁ ସୁଁ ହୋଇ କାନ୍ଦିବା ଏ ପର୍ଯ୍ୟନ୍ତ ବନ୍ଦ ହୋଇ ନଥାଏ । ଯାଦୁକର ଧମକ ଦେଇ କହିଲା– 'କାନ୍ଦ ବନ୍ଦକର ! କାନ୍ଦୁଛ କାହିଁକି? ଦେଖୁନାହିଁ ତୁମର କାନ୍ଦ ଦେଖି ମୋତେ ଆକ୍... ଛେ... ଆକ୍... ଛେ... ।

'ତୁମର ମାଆ ବାପା କଅଣ ବଞ୍ଚିଛନ୍ତି ?' ଯାଦୁକର ପଚାରିଲା ।

'ହଁ, ବାପା ଅଛନ୍ତି, କିନ୍ତୁ ମା' ବିଷୟରେ ମୁଁ କିଛି ଜାଣେ ନାହିଁ ।'

'ଆଚ୍ଛା, କହତ – ଯଦି ମୁଁ ତୁମକୁ ଜାଳି ଦେଇଥାନ୍ତି, ତେବେ ତୁମର ବାପାଙ୍କ ମନରେ କେତେ ଦୁଃଖ ହୋଇଥାନ୍ତା ! ଆକ-ଛେ... କୌଣସି କଥା ନାହିଁ । କିନ୍ତୁ ମୋର ତ କାଠ ଦରକାର । ତା ନ ହେଲେ ମୁଁ କଅଣ କଞ୍ଚା ମାଂସ ଖାଇବି ! କାଠ କମ୍ ହେତୁ ଏହି ମେଣ୍ଢାଟି କଞ୍ଚା ରହିଯାଉଛି । ବର୍ତ୍ତମାନ ମୋତେ ନିଜର କୌଣସି କାଠକୁଣ୍ଢେଇ ଜାଳିବାକୁ ପଡ଼ିବ । ଆରେ ଶୁଣ ! ସିପାହୀମାନେ ଶୁଣ !'

ଯାଦୁକର ନିଜ କାଠ ସିପାହୀମାନଙ୍କୁ ସଙ୍କେତ ଦେଲା । ସେମାନେ ସଙ୍ଗେ ସଙ୍ଗେ ପାଦ ମିଳାଇ ଚାଲି ଚାଲି ତା' ଆଗରେ ପହଞ୍ଚିଗଲେ । ସେମାନେ ଦେଖିବାକୁ ଦୁର୍ବଳ ଓ ପତଳା, କିନ୍ତୁ ଅଧିକ ଲମ୍ବା । ହାତରେ ଖୋଲା ତରୁଆଲ ଧରିଥାନ୍ତି । ଯାଦୁକର କହିଲା–

'ହରଲେକ୍କୁ ଧରିନିଅ ଓ ଭଲରୂପେ ହାତଗୋଡ଼ ବାନ୍ଧି ତାକୁ ଚୁଲିରେ ପକାଇଦିଅ । କୌଣସି ପ୍ରକାରେ ମେଣ୍ଢାଟି ସିଝିଯାଉ ।'

ଏହା ଶୁଣି ହରଲେର ଜ୍ଞାନ ହଜିଗଲା । ତାର ଗୋଡ଼ ଥରିବାକୁ ଲାଗିଲା । ସେ ତଳେ ପଡିଗଲା । ସିପାହୀମାନେ ତାକୁ ଟାଣିବାକୁ ଲାଗିଲେ । ପିନାକିୟୋକୁ ଏହା ଖୁବ୍ ଖରାପ ଲାଗିଲା । ସେ କାନ୍ଦି କାନ୍ଦି ଯାଦୁକରର ଗୋଡ଼ ଧରି କହିଲା– 'ଯାଦୁକର ସାହେବ ! ଦୟାକରି ତାକୁ ଛାଡ଼ିଦିଅନ୍ତୁ ।'

ନିଜକୁ ହଜୁର, ସରକାର ବୋଲି ଡାକୁଥିବା ଶୁଣି ଯାଦୁକର ଭାରି ଖୁସି ହୋଇ ମୁରୁକିହସା ଦେଲା । ପୁଣି ସେ ପିନାକିୟୋକୁ ପଚାରିଲା – 'କଅଣ ? ତୁମେ କଅଣ ଚାହୁଁଛ ?'

'ସରକାର ଏହି ଗରିବ ହରଲେକୁ ଛାଡ଼ିଦିଅନ୍ତୁ ।'

'ଛା, ମୁଁ ଏହାକୁ ଛାଡ଼ିବି ନାହିଁ । ଯଦି ମୁଁ ଏହିପରି ଏହାକୁ ଛାଡ଼ିଦିଏ, ମୋର ମେଣ୍ଢା ସିଝିବ କିପରି ? ମୁଁ କଅଣ କଞ୍ଚା ମାଂସ ଖାଇବି ?'

'ଏପରି କଥା ! ତେବେ ଠିକ୍ ଅଛି । ମୁଁ ନିଜର କର୍ତ୍ତବ୍ୟ ଜାଣେ । ଆଚ୍ଛା ଏହା କିପରି ହୋଇପାରେ ଯେ ମୁଁ ଚାହିଁଥିବି ଓ ମୋର ସମ୍ମୁଖରେ ମୋର ସତ୍ ମିତ୍ର ହରଲେକୁ ନିଆଁରେ ପୂରାଇ ଦିଆଯିବ ! ଆପଣଙ୍କ ସୀପାହୀମାନଙ୍କୁ କହିଦିଅନ୍ତୁ ଯେ, ସେମାନେ ତାକୁ ଛାଡ଼ି ଦିଅନ୍ତୁ ଓ ତା' ସ୍ଥାନରେ ମୋତେ ଜାଳି ଦିଅନ୍ତୁ ।'

ପିନାକିୟୋ ଖୁବ୍ ଧୀରେ ଭାବେ ଏହି କଥା କହିଲା । ତାର ସେକଥା ଶୁଣି ସେଠାରେ ଠିଆ ହୋଇଥିବା ସବୁ କାଠ କୁଣ୍ଢେଇଗୁଡିକ ତାଳି ମାରିବାକୁ ଲାଗିଲେ । ସମସ୍ତଙ୍କ ଆଖିରୁ ଲୁହ ବହିବାକୁ ଲାଗିଲା । ଯାଦୁକର ମନରେ ମଧ ଦୟା ଆସିଲା । ଚାରି ପାଞ୍ଚ ଥର ଛିଙ୍କିବା ପରେ ସେ ପିନାକିୟୋର ପିଠି ଥାପଡ଼େଇ କହିଲା– 'ସାବାସ, ବର୍ତ୍ତମାନ ମୁଁ ଆଦେଶ ଦେଉଛି ଯେ ହରଲେକୁ ଛାଡ଼ିଦିଆଯାଉ । ଆଜି ମୋର ମେଣ୍ଢା କଞ୍ଚା ହିଁ ରହିବ । କିନ୍ତୁ ମନେରଖ, ଆଗକୁ ପୁଣି ମୁଁ କଦାପି ଛାଡ଼ିବି ନାହିଁ ।

ଏହି ଖବର ଅନ୍ୟାନ୍ୟ କାଠକୁଣ୍ଢେଇ ପାଇବା ମାତ୍ରେ ସେମାନେ ଖୁସିରେ ନାଚିବାକୁ ଲାଗିଲେ । ସେଦିନ ରାତିସାରା ସେମାନେ ନାଚିଲେ ।

ପରଦିନ ଯାଦୁକର ପିନାକିୟୋକୁ ପାଖକୁ ଡାକିଲା । ପଚାରିଲା– 'ତୁମ ବାପାଙ୍କ ନାମ କଅଣ ? ସେ କଅଣ କରନ୍ତି ?'

'ନାମ—ଜପେତୋ । କାମ—ଭିକ ମାଗିବା ।'

'ଭିକମଗାରୁ ସେ କେତେ କମାନ୍ତି ?'

'କମେଇବେ କଅଣ ? ଏଠାରେ ତାଙ୍କର ସମୟ ସମୟରେ ଗୋଟିଏ ହେଲେ ପଇସା ବଳେ ନାହିଁ । ଦେଖୁ ନାହାନ୍ତି – ମୋର ବହି କିଣିବା ପାଇଁ ମୋ ବାପାଙ୍କୁ ନିଜର କୋଟ୍ ପର୍ଯ୍ୟନ୍ତ ବିକ୍ରି କରିବାକୁ ପଡ଼ିଥିଲା ।'

'ଓଃ, ବିଚରା ! ଆଚ୍ଛା, ଏ ମୋହର ପାଞ୍ଚଟି ନିଅ । ଯାଅ ତୁମର ବାପାଙ୍କୁ ଦେଇଦେବ ।'

ପିନାକିୟୋ ଶହେ ଥର ମୁଣ୍ଡ ନୁଆଁଇ ତାଙ୍କୁ ସଲାମ କଲା । ପୁଣି ସେହି କମ୍ପାନୀର ସୁବ କାଠକୁଣ୍ଢେଇଙ୍କ ସହିତ ସାକ୍ଷାତ କଲା । ଏପରିକି ସବୁ କାଠ ସିପାହୀମାନଙ୍କ ସହିତ ମଧ ସାକ୍ଷାତ କଲା । ଏହିପରି ସେ ସମସ୍ତଙ୍କ ସହିତ ଆନନ୍ଦରେ ମିଳାମିଶା କରି ଘର ଆଡ଼କୁ ଚାଲିଲା ।

କିନ୍ତୁ ସେ ବେଶୀ ଦୂର ଯାଇନାହିଁ, ହଠାତ୍ ରାସ୍ତାରେ ଗୋଟିଏ ଛୋଟା ଶୃଗାଳ ଓ ଗୋଟିଏ କାଣୀ ବିଲେଇ ସହିତ ତାର ଦେଖାହେଲା । ବିଚାରା ଦୁହେଁ ପରସ୍ପରକୁ ସାହାଯ୍ୟ କରି କେଉଁଆଡ଼େ ଚାଲିଥାନ୍ତି । ଶୃଗାଳଟି ଛୋଟା ଥିଲା । ତେଣୁ ସେ ବିଲେଇ ସାହାଯ୍ୟରେ ଚାଲୁଥାଏ ଓ କାଣୀବିଲେଇକୁ ରାସ୍ତା ଦେଖାଇ ଦେଉଥାଏ । ପିନାକିୟୋକୁ ଦେଖି ଶୃଗାଳ ଅଦ୍ଭୁତ ଭାବେ କହିଲା—

—'ସଲାମ୍ ଭାଇ ପିନାକିୟୋ ।'

'ତୁମେ ମୋର ନାମ ଜାଣିଲ କିପରି ?'

'ବାଃ, ମୁଁ ତ ତୁମ୍ଭର ବାପାଙ୍କୁ ମଧ ଜାଣେ ।'

'କିପରି ?'

'ମୁଁ କାଲି ତାଙ୍କୁ ତାଙ୍କ ଘରେ ବସିଥିବାର ଦେଖିଥିଲି ।'

'ସେ କଅଣ କରୁଥିଲେ ?'

ସେ ବିଚରା ତାଙ୍କର ଚିରା କାମିଜ ପିନ୍ଧି ଥରୁଥିଲେ ।'

'ଆହା, କିନ୍ତୁ ବର୍ତ୍ତମାନ କୌଣସି କଥା ନାହିଁ । ଆଗକୁ ଆଉ ତାଙ୍କୁ ଶୀତରେ ଥରିବାକୁ ପଡ଼ିବ ନାହିଁ ।'

'କାହିଁକି ?' ଶୃଗାଳ ଆଶ୍ଚର୍ଯ୍ୟଭାବେ ପଚାରିଲା ।

'କାହିଁକି ? ଆଜିକାଲି ଆମେ ବଡ଼ଲୋକ ହୋଇଗଲୁଣି ।'

'ବଡ଼ଲୋକ ପୁଣି ତୁମେ ? ଶୃଗାଳ ମନେ ମନେ ହସି ହସି କହିଲା । ବିଲେଇକୁ ମଧ୍ୟ ହସମାଡ଼ିଲା । କିନ୍ତୁ ସେ ନିଜର ହସକୁ ଲୁଚାଇବାପାଇଁ ତାର ଲମ୍ୱା ଲମ୍ୱା ମୁଛରେ ହାତ ବୁଲାଇବାକୁ ଲାଗିଲା । ପିନାକିୟୋ ରାଗିଯାଇ ବଡ଼ପାଟିରେ କହିଲା–ଆଚ୍ଛା, ଏଥିରେ ହସିବାର କଅଣ ଅଛି । ଏଇ ଦେଖ, ମୋ ପାଖରେ ପାଞ୍ଚଟା ମୋହର ଅଛି, ସୁନାର ମୋହର । ଏହା କହି ସେ ତାଙ୍କୁ ମୋହର ଦେଖାଇଦେଲା ।'

ମୋହର ଶବ୍ଦ ଶୁଣି ଶୃଗାଳ ଗୋଟିଏ ପାଦ ଆଗକୁ ବଢ଼ାଇଲା, ଯେଉଁ ପାଦଟି ତାର ଛୋଟା ହୋଇଥିଲା । କେବଳ ଏତିକି ନୁହେଁ; କାଣୀ ବିଲେଇ ମଧ୍ୟ ନିଜର ଦୁଇ ଆଖି ଖୋଲି ମୋହର ଆଡ଼କୁ ଚାହିଁଲା । ପିନାକିୟୋ ଦେଖିଲା ଯେ ତା ପୂର୍ବରୁ ସେ ଆଖି ବୁଜି ବସିଥିଲା ।

'ଏ ଧନକୁ ତୁମ୍ଭେ କଅଣ କରିବ ?'

'ପ୍ରଥମେ ତ ଏଥିରେ ମୋ ବାପା ପାଇଁ ଖଣ୍ଡିଏ କୋଟ ତିଆରି କରାଇଦେବି । ତାହା ସୁନା ଓ ଚାନ୍ଦିର ହୋଇଥିବ ଓ ତହିଁରେ ହୀରାର ବୋତାମ ଲାଗିଥିବ । ତା'ପରେ ମୋ ପଢ଼ିବାପାଇଁ ଖଣ୍ଡିଏ ବହି କିଣିବି । କାରଣ ମୁଁ ସ୍କୁଲକୁ ଯାଇ ପଢ଼ିବାକୁ ଇଚ୍ଛା କରୁଛି ।'

'ଆହା, ପଢ଼ିକରି କଅଣ କରିବ ? ଦେଖୁନାହଁ, ପଢ଼ିବା ଅବସ୍ଥାରେ ମୋର ଗୋଟିଏ ଗୋଡ଼ ଭାଙ୍ଗିଯାଇଛି ।' ଶୃଗାଳ କହିଲା ।

ସେତେବେଳେ ବିଲେଇ ମଧ୍ୟ କହିଲା–'ଆଉ ମତେ ଦେଖ, ପଢ଼ିବାରେ ମୋର ଦୁଇଟିଯାକ ଆଖି ଚାଲିଗଲା ।'

ସେତେବେଳେ ଗଛ ଉପରେ ବସିଥିବା ଗୋଟିଏ ଚଢ଼େଇ କହିଲା–'ପିନାକିୟୋ, ଏମାନଙ୍କ କଥା ଶୁଣ ନାହିଁ । ଏମାନେ ମିଛ କହୁଛନ୍ତି । ଏମାନଙ୍କ କଥା ମାନିଲେ ପରେ ଅନୁତାପ କରିବ ।'

ଚଢ଼େଇଟି ଆଉ କଅଣ କହିବାକୁ ଯାଉଥିଲା କିନ୍ତୁ ବିଲେଇ ଏକା କୁଦାକେ ଗଛ ଉପରକୁ ଉଠିଗଲା ଓ ଚଢ଼େଇକୁ ମାରିଦେଲା । ଦେଖୁ ଦେଖୁ ସେ ଚଢ଼େଇକୁ ଖାଇଦେଲା । ଏପରିକି ତାର ଡେଣାଗୁଡ଼ିକ ମଧ୍ୟ ଛାଡ଼ିଲା ନାହିଁ । ଚଢ଼େଇକୁ ଖାଇ ନିଜର ମୁହଁ ସଫାକରି ସେ ତଳକୁ ଓହ୍ଲାଇ ଆସିଲା ଓ ପୁଣି ଆଗପରି ଅନ୍ଧ ହୋଇଗଲା ।

'ଆହା ବିଚରା ଚଢ଼େଇ !' ପିନାକିୟୋ କହିଲା ଓ ବିଲେଇକୁ ପଚାରିଲା– 'ତୁମେ ଏହା ସହିତ ଏପରି ବ୍ୟବହାର କାହିଁକି କଲ ?'

'ତାକୁ ଶିକ୍ଷା ଦେବାପାଇଁ । ଭବିଷ୍ୟତକୁ ସେ ଅନ୍ୟର କଥାରେ କଥା କହିବ ନାହିଁ ।'

ଏତିକିବେଳେ ଶୃଗାଳ ପଚାରିଲା–'କଅଣ ପିନାକିୟୋ, ତୁମେ ନିଜର ଧନକୁ ଦୁଇଗୁଣ ବଢ଼ାଇବାକୁ ଇଚ୍ଛା କରୁଛ ? କହ, ତୁମେ ତୁମର ପାଞ୍ଚଟି ମୋହରକୁ ଶହେ, ହଜାରେ ବା ଏକଲକ୍ଷ କରିବାକୁ ଇଚ୍ଛା କରୁଛ କି ?'

'ହଁ ହଁ, କିନ୍ତୁ କିପରି ?'

'ତେବେ ଠିକ୍ ଅଛି । କିନ୍ତୁ ଏଥିପାଇଁ ତୁମକୁ ଘରକୁ ନ ଯାଇ୍ ଆମ ସାଥିରେ ଯିବାକୁ ପଡ଼ିବ ।'

'କୁଆଡ଼େ ? ତୁମେ ମୋତେ କେଉଁଆଡ଼େ ନେଇଯିବାକୁ ଚାହୁଁଛ ?'

'ଯାଦୁଦେଶକୁ ।'

କିଛି ସମୟ ଚିନ୍ତା କରି ପିନାକିୟୋ କହିଲା–'ନା, ମୁଁ ଯିବି ନାହିଁ । ଏଠାରୁ ମୋର ଘର ଅତି ନିକଟରେ । ବାପା ମୋର ବାଟ ଚାହିଁ ବସିଥିବେ । ମୁଁ ତାଙ୍କ ନିକଟକୁ ଯିବି । ଜାଣେନା, କାଲି ତାଙ୍କର ଅବସ୍ଥା କଅଣ ହୋଇଥିବ ।'

'ତେବେ ତୁମେ ଘରକୁ ଫେରିଯିବା ପାଇଁ ନିଶ୍ଚୟ କରିଛ ? ଯାଅ, କିନ୍ତୁ ମନେରଖ, ତୁମେ ଏପରି ମିଳୁଥିବା ଧନକୁ ଗୋଡ଼ରେ ଆଡ଼େଇ ଦେଇ ଯାଉଛ'– ଶୃଗାଳ କହିଲା ।

'ହଁ, ତୁମେ ମିଳୁଥିବା ଧନକୁ ଗୋଡ଼ରେ ଆଡ଼େଇଦେଉଛ–ବିଲେଇ କହିଲା । କେବଳ ଆଜି ଓ କାଲି ଏହି ଦୁଇଟି ଦିନରେ ତୁମର ପାଞ୍ଚଟି ମୋହର ବଢ଼ି ଦୁଇ ହଜାର ହୋଇଯାଆନ୍ତା ।'

'ହଁ, ଦୁଇହଜାର ହୋଇଯାଆନ୍ତା ।'

'କିନ୍ତୁ ଏହା କିପରି ହୋଇପାରେ ?' ପିନାକିୟୋ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ଶୃଗାଳ ମୁରୁକି ହସି କହିଲା–'ମୁଁ ତୁମକୁ କହିଦେଉଛି । ତୁମେ ଜାଣିଥିବ, ଯାଦୁଦେଶରେ ଗୋଟିଏ ପଡ଼ିଆ ଅଛି, ଯାହାକୁ ଯାଦୁପଡ଼ିଆ କହନ୍ତି । ସେହି ପଡ଼ିଆରେ ଗାତ ଖୋଳି ଗୋଟିଏ ମୋହର ପୋତିଦେବ, ଦୁଇଡାଳ ପାଣି ଢାଳି...ନୁଣ ଛାଟିଦେଇ ରାତିରେ ଶୋଇପଡ଼ିବ । ସକାଳେ ତୁମେ ଉଠିଲା ବେଳକୁ, ଜାଣିଛ ତୁମକୁ କଅଣ ମିଳିବ ? ସେହି ସ୍ଥାନରେ ଗୋଟିଏ ମୋହରର ଗଛ ଉଠିଥିବ ଓ ତହିଁରେ ମୋହର ଫଳିଥିବ । ବେଶ୍ ତୁମେ ହାତରେ ମୋହର ଛିଣ୍ଡାଇବ ।'

ଏହା ଶୁଣି ପିନାକିୟୋକୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଏକଥା ତ ସେ ପୂର୍ବେ କେବେହେଲେ ଶୁଣି ନ ଥିଲା । ତାର ଲୋଭ ହେଲା । ସେ ପଚାରିଲା–'ଆଚ୍ଛା, ଏପରି କଥା । ଯଦି ମୁଁ ପାଞ୍ଚଟିଯାକ ମୋହର ଏକ ସଙ୍ଗରେ ପୋତିଦିଏ, ତେବେ କଅଣ ହେବ ?'

'ତେବେ ତ ଏତେ ମୋହର ଫଳିବ ସେ ଆଉ କହନି । ଦୁଇ ହଜାରରୁ ଅଧିକ ମୋହର, ଅଢ଼େଇ ହଜାର ହୋଇଯିବ ।'

'ଆଚ୍ଛା, ତେବେ ତ ସେଥିରୁ ପାଞ୍ଚଶହ ମୋହର ମୁଁ ତୁମ ଦୁହିଁଙ୍କୁ ବକ୍‌ସିସ ଦେବି ।'

'ବକ୍‌ସିସ ? କିପରି ବକ୍‌ସିସ ?'

'ହଁ କିପରି ବକ୍‌ସିସ ?' ବିଲେଇ କହିଲା ।

'ଆମେ ବକ୍‌ସିସ ଆଶାରେ କୌଣସି କାମ କରୁନାହୁଁ । ଆମେ ତ କେବଳ ଅନ୍ୟର ମଙ୍ଗଳ ଚାହୁଁ'–ଶୃଗାଳ କହିଲା ।

'ହଁ, ଆମେ ତ କେବଳ ପରର ମଙ୍ଗଳ ଚାହୁଁ'–ବିଲେଇ କହିଲା ।

ପିନାକିୟୋ ଭାବିଲା–ଦେଖ, ଏମାନେ କେଡ଼େ ସରଳ, କେବଳ ପରର ମଙ୍ଗଳ ହିଁ କରୁଛନ୍ତି । ପୁଣି ତାର ମନେପଡ଼ିଗଲା ଯେ, ମୋତେ ଅଢ଼େଇ ହଜାର ମୋହର

ମିଳିଯିବ । ଏହାଦ୍ୱାରା ମୁଁ ତ ବହୁତ କିଛି କରିପାରିବି । ସେ ଶୀଘ୍ର ସେମାନଙ୍କ ସହିତ ଯିବାପାଇଁ ରାଜି ହୋଇଗଲା ।

ସେମାନେ ଦ୍ରୁତଗତିରେ ଚାଲିଲେ । ସନ୍ଧ୍ୟାକୁ ସେମାନେ ଗୋଟିଏ ହୋଟେଲରେ ପହଞ୍ଚିଲେ । ସେତେବେଳକୁ ସେମାନେ ଖୁବ୍ ଥକି ପଡ଼ିଥିଲେ । ଶୃଗାଳ କହିଲା– 'ଆସ, ଏହି ହୋଟେଲରେ ରହିଯିବା । କିଛି ସମୟ ଆରାମକରି, ଖାଇପିଇ ପ୍ରାୟ ଅଧରାତିକୁ ପୁଣି ଯାତ୍ରା କରିବା । ତେବେ ସକାଳ ହେଉ ହେଉ ଆମେ ଯାଦୁପଡ଼ିଆରେ ପହଞ୍ଚିଯିବା ।'

ତିନିହେଁ ଖାଇବାପାଇଁ ବସିପଡ଼ିଲେ । ଶୃଗାଳ ବେମାର ଅଛି ବୋଲି ବାହାନା କଲା । ବିଲେଇ ମଧ୍ୟ ପେଟ ଖରାପ ହୋଇଛି ବୋଲି ବାହାନା କଲା । ତଥାପି ଦୁହେଁ ବସିକରି ଖାଇଲେ । ଫଳରେ ପିନାକିୟୋ ଭୋକରେ ରହିଗଲା ।

ସେ ଗୋଟିଏ କୋଠରିକୁ ଫେରିଆସିଲା । ଶୃଗାଳ ଓ ବିଲେଇ ଅନ୍ୟ କୋଠରିକୁ ଚାଲିଗଲେ । କିଛି ସମୟ ବିଶ୍ରାମକରି ରାତି ଅଧରେ ଯାତ୍ରା ଆରମ୍ଭ କରିବାର କଥା ।

ବିଛଣା ଧରୁ ଧରୁ ପିନାକିୟୋକୁ ନିଦ ହୋଇଗଲା । ସେ ସ୍ୱପ୍ନ ଦେଖିବାକୁ ଲାଗିଲା ଯେ, ସେ ଯାଦୁ ପଡ଼ିଆରେ ଅଛି ଓ ନିଜର ମୋହରଗୁଡ଼ିକୁ ପୋତି ପାଣି ଛିଞ୍ଚୁଛି । ଅଳ୍ପ ସମୟ ପରେ ମୋହର ଗଛ ଉଠିଗଲା ଓ ସେ ଦୁଇ ହାତରେ ମୋହର ତୋଳି ପକେଟରେ ରଖିବାକୁ ଲାଗିଲା । ଠିକ୍ ସେତିକିବେଳେ ସେ ଶୁଣିଲା, କିଏ କବାଟ ଖଟଖଟ କରୁଛି । କବାଟ ଖୋଲିବାରୁ ସେ ବୁଝିପାରିଲା ଯେ ହୋଟେଲର ମାଲିକ ତାକୁ ଉଠାଉଅଛି ।

ହୋଟେଲର ମାଲିକ ତାକୁ କହିଲା, ''ଉଠ, ରାତି ଅଧ ହୋଇଗଲାଣି । ତୁମର ଯିବାର ଥିଲା ନା ? ଆପଣଙ୍କ ସାଥୀ ଦୁଇଜଣ ତ ଚାଲିଗଲେଣି । ଘରୁ ତାର ଆସିଥିଲା– ହଠାତ୍ ବିଲେଇର ବଡ଼ଛୁଆ ଖୁବ୍ ବେମାର ପଡ଼ିଛି । କିନ୍ତୁ ସନ୍ଧ୍ୟାବେଳେ ଖାଇବା ପଇସା ସେମାନେ ଦେଇନାହାନ୍ତି । କାରଣ ସେମାନେ ଆପଣଙ୍କ ଅତିଥି ଥିଲେ । ପଇସା ଦେଇ କିପରି ଆପଣଙ୍କୁ ଅପମାନିତ କରିଥାଆନ୍ତେ ।'' ପିନାକିୟୋ ମନରେ ଭାରି ଦୁଃଖ ହେଲା । କିନ୍ତୁ ସେ କିଛି କହିଲା ନାହିଁ । ହୋଟେଲବାଲାକୁ ଗୋଟିଏ ମୋହର ଦେଇ ହୋଟେଲର ବାକି ପରିଶୋଧ କଲା ଓ ଏକାକୀ ବାହାରିପଡ଼ିଲା ।

ହୋଟେଲ ବାହାରେ ଘନ ଅନ୍ଧକାର ହୋଇଥାଏ । ମୁହଁକୁ ମୁହଁ ଦେଖାଯାଉ ନ ଥାଏ । ପିନାକିୟୋ କୌଣସି ପ୍ରକାରେ ପଡ଼ିଉଠି ଆଗକୁ ଚାଲୁଥାଏ । କିଛିଦୂର ଯିବାପରେ ଗୋଟିଏ ଗଛର ଛାଇରେ ଗୋଟିଏ ଛୋଟ ପୋକ ଟିକ୍ ଟିକ୍ ହୋଇ ଦେଖାଗଲା । ପିନାକିୟୋ ତାକୁ ପଚାରିଲା—'ତୁ କିଏ ଓ ଏଠାରେ କାହିଁକି ବସିଛୁ ?'

ପୋକଟି ଧୀର ସ୍ୱରରେ କହିଲା—'ମୁଁ ସେହି ଝିଙ୍କାରିର ଭୂତ । ଯାହାକୁ ତୁମେ ହାତୁଡ଼ି ଫିଙ୍ଗି ମାରିଦେଇଥିଲ । ମୁଁ ତୁମକୁ ଗୋଟିଏ ପରାମର୍ଶ ଦେବାକୁ ଇଚ୍ଛା କରୁଛି । ପିନାକିୟୋ, ମୋ କଥା ମାନି ଘରକୁ ଫେରିଯାଅ । ତୁମ ବାପା ତୁମକୁ ମନେ ପକାଇ କାନ୍ଦୁଛନ୍ତି । ତାଙ୍କ ନିକଟକୁ ଯାଅ ଓ ବଞ୍ଚିଥିବା ମୋହର ଚାରୋଟି ତାଙ୍କୁ ଦେଇଦିଅ । ଶୃଗାଳ ଓ ବିଲେଇ କଥା ମାନ ନାହିଁ । ସେମାନେ ତୁମକୁ ଠକିବାକୁ ଚାହାନ୍ତି ।'

'କିନ୍ତୁ ମୁଁ ତ ଯାଦୁପଡ଼ିଆକୁ ଯାଉଛି । ସେଠାରୁ ଅନେକ ମୋହର ଆଣି ଫେରିବି ।'

'ମୋ କଥା ମାନି ଘରକୁ ଫେରିଯାଅ । ଏପରି ଅନ୍ଧାର ରାତିରେ ଏକାକୀ ଯାଅ ନାହିଁ । ସେମାନେ ତୁମକୁ ମାରିପକାଇବେ ।' ଏହା କହି ପୋକଟି ଅଦୃଶ୍ୟ ହୋଇଗଲା । ରାସ୍ତା ପୁଣି ଅନ୍ଧାର ହୋଇଗଲା । ପିନାକିୟୋ ଆଗକୁ ଚାଲିଥାଏ । ଏପରି ଗୋଟିଏ ପାଗଳ ଝିଙ୍କାରି ସହିତ ଦେଖାହେବା ତାକୁ ଭଲ ଲାଗିଲା ନାହିଁ । ସେ ମନେ ମନେ କହିଲା, ଏହି ଝିଙ୍କାରି ବୃଥାରେ ମୋତେ ଭୟ ଦେଖାଉଛି । କହୁଛି, ଲୋକେ ମୋତେ ମାରି ପକାଇବେ । କାହିଁକି ଭଲା ମାରିବେ ? ମୁଁ କଅଣ କାହାରି ଅନିଷ୍ଟ କରିଛି ? ପୁଣି ଯଦି ଘାତକମାନେ ମୋତେ ମାରିବାକୁ ଆସିବେ ତେବେ ମୁଁ ତାଙ୍କୁ କହିବି, ଏହାର ରହସ୍ୟ କଅଣ ? କହିବି, ବୃଥାରେ ମୋତେ ମାର ନାହିଁ । ଯାଅ, ନିଜ କାମ କର । ଏଥିରେ ଯଦି ସେମାନେ ନ ମାନନ୍ତି, ତେବେ ମୁଁ ନିଜେ ବାହାରି ଛିଡ଼ା ହେବି ।'

ସେ ଏହିପରି ଭାବି ଚାଲିଛି ହଠାତ୍ ପତ୍ର ଭିତରେ ଖଡ଼ ଖଡ଼ ଶବ୍ଦ ହେଲା । ପଛକୁ ବୁଲି ଯାହା ଦେଖିଲା, ସେଥିରେ ତାର ନିଶ୍ୱାସ ରୁଦ୍ଧ ହୋଇଗଲା । ଜଣାନାହିଁ—କିଏ ଦୁଇଟି କଳା କଳା ଲୋକ ତା' ପଛେ ପଛେ ଆସୁଛନ୍ତି । ସେମାନେ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ କଳାଲୁଗା ଘୋଡ଼ି ହୋଇଅଛନ୍ତି । ଦେଖିଲେ ଜଣାପଡୁନାହିଁ ଯେ ସେମାନେ ମନୁଷ୍ୟ କି ପଶୁ । ସେମାନେ ଡେଇଁ ଡେଇଁ ପିନାକିୟୋ ଆଡ଼କୁ ଆସୁଥାନ୍ତି । ପିନାକିୟୋକୁ ପଳାଇବାର ସୁଯୋଗ ମଧ୍ୟ ମିଳିଲା ନାହିଁ । କାରଣ ଏଥିମଧ୍ୟରେ ସେମାନଙ୍କ ମଧ୍ୟରୁ

ଜଣେ ଆସି ତାର ବାହାକୁ ଧରିପକାଇ କହିଲା–'ପୈସା ଦୋ, ନୋହିଲେ ଜୀବନ ଦୋ ।'

ପିନାକିୟୋ ମୋହରଗୁଡ଼ିକୁ ମୁହଁରେ ରଖିଥିଲା । ତାକୁ ହୋଟେଲରେ ଭୟ ହୋଇଥିଲା ଯେ, କେହି ଯେପରି ତାର ମୋହରଗୁଡ଼ିକୁ ଚୋରାଇ ନ ନିଏ । ତେଣୁ ସେ ମୋହରଗୁଡ଼ିକ ପାଟି ଭିତରେ ରଖି ଶୋଇଥିଲା । ବର୍ତ୍ତମାନ ମଧ ମୋହରଗୁଡ଼ିକ ତାର ମୁହଁ ଭିତରେ ଥିଲା । ତେଣୁ ସେ କଥା କହିପାରୁ ନ ଥିଲା । ସେ ବାରମ୍ବାର ମୁଣ୍ଡ ହଲାଉଥାଏ ଓ ହାତରେ ସଙ୍କେତ ଦେଇ ସେମାନଙ୍କୁ କହିବାକୁ ଚେଷ୍ଟା କରୁଥାଏ ଯେ, ମୋ ପାଖରେ କିଛି ନାହିଁ ।

'ଯାଅ, ବାହାର କର, ତୁମ ପାଖରେ ଯାହା କିଛି ଅଛି ।' ସେମାନଙ୍କ ମଧ୍ୟରୁ ଜଣେ ଦାନ୍ତ ରଗଡ଼ି କହିଲା ।

ହଁ, ଆମେ ତୁମକୁ ମାରିପକାଇବୁ–ଅନ୍ୟଜଣକ କହିଲା । ପିନାକିୟୋ ହାତ ହଲାଇ ପୁଣି କହିଲା ଯେ ମୋ ପାଖରେ କିଛି ନାହିଁ । କିନ୍ତୁ ସେମାନଙ୍କ ମଧ୍ୟରୁ ଜଣେ ଅତି ଜୋର୍‌ରେ ତାର ହାତକୁ ଚାପିଧରି କହିଲା–'ବାହାର କର । ନଚେତ୍ ଆମେ ତୁମକୁ ଓ ତୁମ ବାପାଙ୍କୁ ମଧ ମାରିଦେବୁ ।'

'ହଁ, ତୁମ ବାପାଙ୍କୁ ମଧ ମାରିଦେବୁ'–ଅନ୍ୟ ଜଣକ କହିଲା ।

'ନା ନା, ମୋ ବାପାଙ୍କୁ ମାର ନାହିଁ' ପିନାକିୟୋ ଭୟରେ ଡାକ ପକାଇଲା । ଏହାଦ୍ୱାରା ତା ମୁହଁରେ ଥିବା ମୋହରଗୁଡ଼ିକ ବାଜିଉଠିଲା ।

ଓ... ଆମକୁ ଠକିବାକୁ ଚାହୁଁଛ । ତୁମେ ମୁହଁ ଭିତରେ ପଇସା ରଖିଛ । ବାହାର କର, ବାହାର କର – ଦୁହେଁ ପାଟି କଲେ । କିନ୍ତୁ ପିନାକିୟୋ ଜୋରରେ ମୁହଁ ବନ୍ଦକରି ଚୁପ୍‌ହୋଇ ଠିଆହେଲା । ଦୁହେଁ ତାକୁ ମାଡ଼ିବସି ତଳେ ପକାଇଦେଲେ ଓ ତାର ମୁହଁ ଖୋଲିବାକୁ ଚେଷ୍ଟା କଲେ । କିନ୍ତୁ ପିନାକିୟୋ ଏପରି ଶକ୍ତଭାବେ ମୁହଁ ବନ୍ଦ କରିଥାଏ ଯେପରିକି ତା' ମୁହଁରେ କିଲା ମରାହୋଇଛି । ବାସ୍ତବରେ ତାର ଦାନ୍ତଗୁଡ଼ାକ କିଲାପରି । ଯେତେବେଳେ ଦୁଇ ଗୁଣ୍ଡା ହାରିଗଲେ ଓ ପିନାକିୟୋଠାରୁ ପଇସା ବାହାର କରିପାରିଲେ ନାହିଁ, ସେତେବେଳେ ତାଙ୍କ ଭିତରୁ ଜଣେ ଗୋଟାଏ କିଲା ତା' ମୁହଁରେ ଭର୍ତ୍ତିକରି ଖୋଲିବାପାଇଁ ଚେଷ୍ଟାକଲା । କିନ୍ତୁ ସେଥିରେ ମଧ କୌଣସି ଫଳ ହେଲା ନାହିଁ । ତା'ପରେ

ସେମାନେ ତାର ହାତ କାଟିବାକୁ ବସିଲେ । ସେମାନେ ପିନାକିୟୋର ହାତକୁ କାଟି ତଳେ ପକାଇଦେଲେ । କିନ୍ତୁ ସେ ଏହା ଦେଖି ଆଶ୍ଚର୍ଯ୍ୟ ହେଲା ଯେ—ଏହା କୌଣସି ଗୁଣ୍ଡାର କାମ ନୁହେଁ । ଏହା ବିଲେଇର ଗୋଟିଏ କାରସାଦି ମାତ୍ର । ପିନାକିୟୋ ସୁଯୋଗ ଦେଖି ପଳାଇଲା । କିନ୍ତୁ ଦୁହେଁ ତା ପଛେ ପଛେ ଧାଇଁଲେ । ଶେଷରେ ଥକିଯାଇ ପିନାକିୟୋ ଗୋଟିଏ ଉଚା ଗଛ ଉପରେ ଚଢ଼ିଗଲା । ଯେତେବେଳେ ତା' ପଛେ ପଛେ ଦୁହେଁ ଗଛରେ ଚଢ଼ିବାର ଦେଖିଲା, ସେତେବେଳେ ପିନାକିୟୋ ତାଙ୍କୁ ଠେଲିଦେଲା । ସେମାନେ ତଳେ ପଡ଼ିଗଲେ ଓ ସେମାନଙ୍କ ହାତଗୋଡ଼ ଛେଲି ହୋଇଗଲା । କିନ୍ତୁ ସେ ଦୁହେଁ ଭାରି ଦୁଷ୍ଟ ଥିଲେ । ଏପରି ସହଜରେ ସେମାନେ ହାରିଲାବାଲା ନଥିଲେ । ସେମାନେ ଶୁଖିଲା କାଠ ସଂଗ୍ରହ କଲେ ଓ ଗଛ ମୂଳରେ ନିଆଁ ଲଗାଇଦେଲେ । ପିନାକିୟୋ ଡେଇଁପଡ଼ି ଅନ୍ୟ ଗଛକୁ ଚାଲିଗଲା । କିନ୍ତୁ ସେମାନେ ତାକୁ ଛାଡ଼ିଲେ ନାହିଁ ।

ଏହିପରି ସକାଳ ହୋଇଆସିଲା । କିନ୍ତୁ ସେ ଦୁହେଁ ତାର ପଛେ ପଛେ ଲାଗିଥାନ୍ତି । ହଠାତ୍ ଦୌଡୁ ଦୌଡୁ ପିନାକିୟୋ ଦେଖିଲା ଯେ, ସେ ଗୋଟିଏ ଗଭୀର ନାଳ ନିକଟରେ ପହଞ୍ଚିଗଲାଣି । ସେ ସାହସ କରି ନାଳ ମଧ୍ୟକୁ ଡେଇଁପଡ଼ିଲା । ମୁହୂର୍ତ୍ତକ ମଧ୍ୟରେ ସେ ନାଳର ସେ ପାଖରେ ପହଞ୍ଚିଗଲା ।

ଯେଉଁମାନେ ତାର ପଛେ ପଛେ ଧାଇଁଥିଲେ ସେମାନେ ମଧ୍ୟ ତା ଦେଖାଦେଖି ଖପ୍ ଖାପ୍ ଡେଇଁପଡ଼ିଲେ । କିନ୍ତୁ ସେ ଦୁହେଁ ନାଳର ଅପରିଷ୍କାର ପାଣିରେ ପଡ଼ିଗଲେ । ପିନାକିୟୋ ସେ ପାଖରେ ଠିଆହୋଇ ସବୁ ଦେଖୁଥାଏ । ତାକୁ ହସ ମାଡ଼ିଲା ।

କିନ୍ତୁ ଅଳ୍ପ ସମୟ ମଧ୍ୟରେ ତାର ହସ ବନ୍ଦ ହୋଇଗଲା ଓ ତାକୁ ନିଜର ଜୀବନ ବଞ୍ଚାଇ ପଳାଇବାକୁ ହେଲା । କାରଣ ସେ ଦୁହେଁ ପହଁରି ପହଁରି କୂଳରେ ପହଞ୍ଚିଗଲେ ଓ ପୁଣି ତାକୁ ଧରିବାକୁ ଚେଷ୍ଟା କଲେ ।

ପିନାକିୟୋ ଦଉଡ଼ି ଦଉଡ଼ି ଥକିଯାଇଥାଏ । ଏହି ଗୁଣ୍ଡାମାନଙ୍କଠାରୁ ରକ୍ଷାପାଇବା ତାକୁ ଅସମ୍ଭବ ଜଣାଗଲା । ସେମାନେ ହତାଶ ହୋଇ ପଛରେ ପଡ଼ିଥାନ୍ତି । କୌଣସିଠି ଛପିଯିବା ପାଇଁ ମଧ୍ୟ ସ୍ଥାନ ନଥିଲା । କିନ୍ତୁ ଯେତେବେଳେ ସେ ବେକ ମୋଡ଼ି ଆଗକୁ ଚାହିଁଲା ସେତେବେଳେ ଦେଖିଲା ସେ ଅଳ୍ପ ଦୂରରେ ଗୋଟିଏ ଛୋଟ ଧଳା ଘର ଦେଖାଯାଉଛି । ଘର ଗଛପତ୍ରରେ ଢାଙ୍କି ହୋଇ ରହିଛି ।

ସେ ତତ୍‌କ୍ଷଣାତ୍ ସେହି ଘର ଆଡ଼କୁ ଦୌଡ଼ିଲା । କଳା ଲୁଗା ଘୋଡ଼ିହୋଇ ସେହି ଡାକୁ ଦୁଇଟି ତା ପଛେ ପଛେ ଆସୁଥାଆନ୍ତି । ଦୀର୍ଘ ଦୁଇଘଣ୍ଟା ଦୌଡ଼ିବା ପରେ ସେ ସେହି ଘର ନିକଟରେ ପହଞ୍ଚିଲା ଓ ଖୁବ୍ ଜୋର୍‌ରେ ଘରର କବାଟ ପିଟିବାକୁ ଲାଗିଲା । ଶେଷରେ ଉପରୁ ଗୋଟିଏ ଝରକା ଖୋଲିଗଲା ଓ ସେଇବାଟେ ଗୋଟିଏ ଝିଅ ତଳକୁ ଚାହିଁଲା । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦରୀ । ତାର ମୁଣ୍ଡର ବାଳଗୁଡ଼ିକ ଖୁବ୍ କଳା ଓ ଦେହ ଧଳା । ସେ କହିଲା—'ଏ ଘରେ କେହି ରହନ୍ତି ନାହିଁ । ଏଠାରେ ସମସ୍ତେ ମରିଗଲେଣି ।'

'ତେବେ ତୁମେ କବାଟ ଖୋଲିଦିଅ । ମୋ ପ୍ରତି ଦୟାକର । ମୁଁ ବଡ଼ ବିପଦରେ ପଡ଼ିଛି ।' ପିନାକିୟୋ ଡାକ ପକାଇଲା ।

'କିନ୍ତୁ ମୁଁ ମଧ ମରିଯାଇଛି ।'

'ମରିଯାଇଛ ? ତେବେ ତୁମେ ଏ ଘରେ କଅଣ କରୁଛ ?'

'ଯେଉଁମାନେ କାରଖାନାକୁ ଯାଆନ୍ତି ମୁଁ ସେମାନଙ୍କର ହିସାବ ରଖେ ।' ଏହା କହି ସେ ଭିତରକୁ ଚାଲିଗଲା ଓ ଝରକା ବନ୍ଦ ହୋଇଗଲା । ପିନାକିୟୋ ଡାକୁ ଖୁବ୍ ବଡପାଟିରେ ଡାକ ପକାଇଲା । କିନ୍ତୁ ଏତିକିବେଳେ କିଏ ପଛରୁ ଆସି ତାର ବେକକୁ ଚିପି ଧରିଲା । ପିନାକିୟୋ ଦେଖିଲା ଯେ ଡାକୁ ଦୁଇଟି ଆସି ପହଞ୍ଚିଗଲେଣି । ସେ ସେମାନଙ୍କୁ ଦେଖି ଭୟରେ ଥରିବାକୁ ଲାଗିଲା । କିନ୍ତୁ ସେ ତାର ମୁହଁକୁ ପୂର୍ବପରି ବୁଜି ରହିଲା । ଜଣେ ଡାକୁ ତାର ବେକକୁ ଚିପିଧରି କହିଲା...'ମୁହଁ ଖୋଲ ଓ ପଇସା ବାହାର କର ।' ଏହା କହି ନିଜ ପକେଟରୁ ଧାରୁଆ ଛୁରୀ ବାହାର କଲା । ଅନ୍ୟ ଡାକୁ ମଧ ଆଉ ଏକ ଛୁରି ବାହାର କଲା । ଦୁହେଁ ଏକାବେଳକେ ପିନାକିୟୋ ଦେହରେ ଛୁରୀ ଭୁଷିଦେଲେ । କିନ୍ତୁ ଏଥିରେ ତାର କୌଣସି କ୍ଷତି ହେଲା ନାହିଁ । କାରଣ ସେ କାଠରେ ତିଆରି ହୋଇଥିଲା । ଓଲଟି ଡାଙ୍କର ଛୁରୀ ଭାଙ୍ଗିଗଲା । ଶେଷରେ ତାଙ୍କ ମଧରୁ ଜଣେ କହିଲା—'ଆରେ ଏ ଏପରି ମରିବ ନାହିଁ । ଏହାକୁ ଫାଶୀରେ ଚଢ଼ାଇଦିଅ ।'

'ହଁ, ଏହାକୁ ଫାଶୀରେ ଚଢ଼ାଇଦିଅ ।' ଅନ୍ୟ ଜଣକ କହିଲା । ଦୁହେଁ ସଙ୍ଗେ ସଙ୍ଗେ ତାର ହାତକୁ ଶକ୍ତ କରି ପିଠିରେ ବାନ୍ଧିପକାଇଲେ । ପୁଣି ବେକରେ ଦଉଡ଼ି ଲଗାଇ ଗଛ ଡାଳରେ ଲଟକାଇ ଦେଲେ । ପୁଣି ଦୁହେଁ ତାର ମରିବା ପର୍ଯ୍ୟନ୍ତ ସେଠି

ଅପେକ୍ଷା କରିବାକୁ ଲାଗିଲେ । କିନ୍ତୁ ତିନି ଘଣ୍ଟା ପରେ ମଧ ପିନାକିୟୋ ଆଖି ମିଟି ମିଟି କରୁଥାଏ ଓ ହାତଗୋଡ଼ ଛାଟୁଥାଏ । ଶେଷରେ ଦୁହେଁ ବସି ବସି ସେଠାରୁ ଚାଲିଗଲେ । ଭାବିଲେ—ଏ ତ କାଲି ନିଶ୍ଚୟ ମରିଯିବ ।

ପିନାକିୟୋକୁ ଏପରି ଅବସ୍ଥାରେ ପ୍ରକୃତରେ ଭାରି କଷ୍ଟ ହେଉଥାଏ । ଖୁବ୍ ଜୋର୍‌ରେ ପବନ ବହୁଥାଏ । ସେ ଡାଳରେ ଲଟ୍‌କି ଏଣେତେଣେ ଝୁଲୁଥାଏ । ଶେଷରେ ତାର ଆଖି ଆଗରେ ସନ୍ଧ୍ୟା ହୋଇଗଲା । ତଥାପି ସେ ଆଶା ହରାଇ ନଥାଏ । ତାର ଦୃଢ଼ ଆଶା ଥାଏ ଯେ ତାକୁ କେହି ହେଲେ ନିଶ୍ଚୟ ରକ୍ଷା କରିବ । 'ରକ୍ଷାକର, ରକ୍ଷାକର' ବୋଲି ସେ ଖୁବ୍ ବଡ଼ପାଟିରେ ଡାକ ପକାଇବାକୁ ଲାଗିଲା ।

କିଛି ସମୟ ପରେ ତାର ଡାକ ବନ୍ଦ ହୋଇଗଲା । ତାର ଦେହ ମଧ ଅବଶ ହୋଇପଡ଼ିଲା ।

ପିନାକିୟୋ ଏହିପରି ଭାବରେ ଗଛ ଡାଳରେ ଝୁଲୁଥାଏ । ଏତିକିବେଳେ ସେହି ଝିଅଟି ଝରକା ଖୋଲି ବାହାରକୁ ଚାହିଁଲା । ପିନାକିୟୋକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ଭାବିଲା—ଯେଉଁ କାଠ କୁଣ୍ଢେଇଟି ତାକୁ ସାହାଯ୍ୟ ମାଗୁଥିଲା କି ଏ ତାକୁ ଡାଳରେ ଲଟକାଇ ଦେଇଛି । ସେ ସଙ୍ଗେ ସଙ୍ଗେ ତିନିଥର ତାଳି ବଜାଇଲା ।

ଦେଖୁ ଦେଖୁ ସେଠାରେ ଗୋଟିଏ ବଡ଼ ଛଞ୍ଚାଣ ଆସି ପହଞ୍ଚିଗଲା । ଆସୁ ଆସୁ ସେ ଝିଅଟିକୁ ସଲାମ୍ କଲା ଓ କହିଲା—'କଅଣ ଆଦେଶ ଦେଉଛନ୍ତି ଦିଅନ୍ତୁ !'

ପ୍ରକୃତରେ ଝିଅଟି ଜଙ୍ଗଲର ଗୋଟିଏ ପରୀ ଅଟେ । ସେ ସେହିଠାରେ ରହୁଥାଏ । ଜଙ୍ଗଲର ସବୁ ପଶୁପକ୍ଷୀ ତାର କଥା ମାନୁଥିଲେ । ପରୀ କହିଲା—'ଯାଅ, ଏହି କାଠକୁଣ୍ଢେଇକୁ ଫାଶୀରୁ ରକ୍ଷାକର । ତୁମ ଥଣ୍ଟରେ ଦଉଡ଼ି କାଟିଦିଅ ଓ ଧୀରେ ଧୀରେ ଗଛରୁ ଓହ୍ଲାଇ ତଳେ ଘାସ ଉପରେ ଶୁଆଇଦିଅ ।'

ଛଞ୍ଚାଣ ଯାଇ ଦୁଇ ମିନିଟ୍ ମଧରେ କାମ ପୂରା କରି ଫେରିଆସିଲା । ସେ ପରୀକୁ କହିଲା—'ସେ ତ ମରିଗଲା ପରି ଦେଖାଯାଉଛି । କିନ୍ତୁ ହଜୁର ସେ ମରିନାହିଁ, ମୁଁ ତା' ବେକରୁ ଦଉଡ଼ି ଖୋଲି ଦେଉ ଦେଉ ସେ ଧୀରେ ଧୀରେ କହିଲା—ଆଃ, ଆଜି ମୋତେ ଟିକେ ଶାନ୍ତି ମିଳିଲା । ଜଣା ଯାଉନାହିଁ ସେ କୌଣସି ବାଳକ କି କାଠକୁଣ୍ଢେଇ ।'

ପରୀ କିଛି କହିଲା ନାହିଁ । ସେ ତିନିଥର ତାଳି ବଜାଇଲା । ସଙ୍ଗେ ସଙ୍ଗେ ଗୋଟିଏ ଧଳା କୁକୁର ଆସି ଠିଆ ହୋଇଗଲା । ପରୀ କୁକୁରକୁ କହିଲା 'ମୋତି ! ଯାଅ ଗାଡ଼ି ବାହାର କର । ଏହି ବଡ଼ ଗଛତଳେ ଘାସ ଉପରେ ଯେଉଁ ବାଳକ ପଡ଼ିଛି, ତାକୁ ଧୀରେ ଧୀରେ ଉଠାଇ ଏଠାକୁ ନେଇଆସ ।'

କୁକୁର ବେକ ନୁଆଁଇ ହଁ ଭରିଲା । ଅଳ୍ପ ସମୟ ମଧ୍ୟରେ ସେ ଗୋଟିଏ ସୁନ୍ଦର ଗାଡ଼ି ବାହାର କରି ଆଣିଲା । ଗାଡ଼ିରେ ସୁନ୍ଦର ଓ କୋମଳ ଗଦି ବିଛା ହୋଇଥାଏ । ଶହେଟି ଧଳା ମୂଷା ଏହି ଗାଡ଼ି ଟାଣୁଥାଆନ୍ତି । କୁକୁର ସହିସ ହୋଇ ଚଳାଉଥାଏ । ଦେଖୁ ଦେଖୁ ଗାଡ଼ି ଅନେକ ଆଗକୁ ଚାଲିଗଲା ।

ଅଳ୍ପ ସମୟ ପରେ ଗାଡ଼ି ଫେରିଆସିଲା । ପରୀ ଘରର ଅଗଣାରେ ଠିଆ ହୋଇ ଗାଡ଼ିକୁ ଅପେକ୍ଷା କରିଥାଏ । ଗାଡ଼ି ପହଞ୍ଚିବାରୁ ସେ କୁକୁର ସାହାଯ୍ୟରେ ପିନାକିୟୋକୁ ଉଠାଇ ଭିତରକୁ ନେଇଗଲା, ଗୋଟିଏ ଛୋଟ ଓ ସୁନ୍ଦର ଘରେ ଶୁଆଇଦେଲା । ଜଙ୍ଗଲର ପ୍ରସିଦ୍ଧ ଡାକ୍ତରମାନଙ୍କୁ ଚିକିତ୍ସା କରିବାପାଇଁ ଡକାଗଲା । ଡାକ୍ତରମାନେ ଦଉଡ଼ି ଦଉଡ଼ି ଆସିଲେ । ସେମାନଙ୍କ ଭିତରୁ ପ୍ରଥମରେ କୁଆ, ଦ୍ୱିତୀୟରେ ପେଚା, ତୃତୀୟରେ ଝିଙ୍କାରି ଥିଲେ । ଏହି ତିନୋଟି ପ୍ରାଣୀ ଜଙ୍ଗଲର ବିଖ୍ୟାତ ଡାକ୍ତର ଥିଲେ । ସେମାନେ ଆସିବାରୁ ପରୀ କହିଲା–'ଆପଣମାନେ ଦେଖି କହନ୍ତୁ ତ ଏହି ଅଭାଗା କାଠକୁଣ୍ଢେଇ ମରିଗଲାଣି କି ବଞ୍ଚିଛି ?'

ସର୍ବପ୍ରଥମେ କୁଆ ପିନାକିୟୋର ନାଡ଼ି ଦେଖିଲା, ଭଲରୂପେ ପରୀକ୍ଷା କରି ସେ ମତ ପ୍ରକାଶ କଲା–'ମୋ ମତରେ ସେ ମରିଗଲାଣି । କିନ୍ତୁ ଏହା ମଧ୍ୟ ହୋଇପାରେ ଯେ ଏ ବର୍ତ୍ତମାନ ପର୍ଯ୍ୟନ୍ତ ଜୀବିତ ଅଛି ।'

ପେଚା କୁଆର କଥାରେ ଅସମ୍ମତ ହୋଇ କହିଲା–'ମୁଁ ଦୁଃଖ ପ୍ରକାଶ କରୁଛି ଯେ ମୋର ମତ ମୋର ବିଦ୍ୱାନ୍ ମିତ୍ର ଓ ଡାକ୍ତର କୁଆଠାରୁ କେତେକ ଭିନ୍ନ । ମୋ ମତରେ ତ ଏ ବର୍ତ୍ତମାନ ପର୍ଯ୍ୟନ୍ତ ଜୀବିତ ଅଛି । କିନ୍ତୁ ଏହା ମଧ୍ୟ ହୋଇପାରେ ଯେ ଏ ମରିଯାଇ ପାରିଥାଏ ।'

ଏହାପରେ ଝିଙ୍କାରି ତାର ମୁଣ୍ଡ ମୋଡ଼ି ଓ ନାରାଜ ହୋଇ କହିଲା–'ଡାକ୍ତରମାନେ ଯାହା ମତ ଦେଲେ ସେଥିରେ ମୁଁ ସମ୍ମତ । କିନ୍ତୁ ସେମାନେ ପ୍ରକୃତରେ କିଛି ସ୍ଥିର

କରିପାରୁ ନାହାନ୍ତି ଓ ଚୁପ୍‌ହୋଇ ବସିପଡ଼ିବା ଉଚିତ । ଏପରି ଏଣୁ ତେଣୁ ବାଜେ କଥା କହି ଲାଭ ବା କଅଣ । ଏହି ଯେଉଁ କାଠକୁଣ୍ଢେଇ ଏଠାରେ ପଡ଼ିଛି, ସେ ଜୀବିତ ଅଛି, ମରି ନାହିଁ । ଏ କାଠକୁଣ୍ଢେଇକୁ ମୁଁ ପୂର୍ବେ କେଉଁଠି ଦେଖିଛି ।'

ଝିଙ୍କାରିର ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ ପିନାକିୟୋ ଉଠି ବସିଲା ଓ ପୁଣି ଶୋଇପଡ଼ିଲା । ଝିଙ୍କାରୀ କହୁଥାଏ—'ଏହି କାଠକୁଣ୍ଢେଇ ଗୋଟିଏ ପ୍ରସିଦ୍ଧ ବଦମାସ, ଅମାନିଆ ଓ ଖରାପ ପିଲା ।' ଏହା ଶୁଣି ପିନାକିୟୋ ବିଛଣାରେ ନିଜର ମୁହଁ ଲୁଚାଇଦେଲା ।

'ଏତେ ବଦମାସ ଯେ ସେ ତାର ବାପାଙ୍କ କଥା ମାନେ ନାହିଁ; ଏଣେତେଣେ ବୁଲେ । ଏହାର ବାପା ଏହାକୁ ମନେପକାଇ କାନ୍ଦି କାନ୍ଦି ବ୍ୟସ୍ତ ହେଉଅଛନ୍ତି ଓ ଏ ଏଣେତେଣେ ଘୂରି ବୁଲୁଛି ।'

ସେତେବେଳେ କିଏ ଘରଭିତରୁ ସୁଁ ସୁଁ ହୋଇ କାନ୍ଦିବାର ଶବ୍ଦ ଶୁଣାଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଲାଗିଲେ । ପିନାକିୟୋ କଅଣ ଏପରି ସୁଁ ସୁଁ ହୋଇ କାନ୍ଦୁଛି । କୁଆ ଗମ୍ଭୀରଭାବେ କହିଲା—'ଯଦି ମରିଥିବା ଲୋକ କାନ୍ଦିବାକୁ ଆରମ୍ଭ କଲାଣି ତେବେ ମନେକର ଯେ ତାର ଶରୀର ସୁସ୍ଥ ହେବାକୁ ବସିଲାଣି ।'

ପେଚା କୁଆ କଥାରେ ଅସମ୍ମତ ହୋଇ କହିଲା—'ମୁଁ ଦୁଃଖର ସହିତ କହୁଛି ଯେ ମୋର ମତ ମୋର ବିଦ୍ୱାନ୍ ମିତ୍ର ଓ ଡାକ୍ତର କୁଆଠାରୁ ପୃଥକ୍ । ମୋ ମତରେ ଯଦି ମରିଥିବା ଲୋକ କାନ୍ଦିବାକୁ ଆରମ୍ଭ କଲାଣି ତେବେ ମନେକର ଯେ ମରିବାକୁ ବସିଥିବାରୁ ସେ ମନରେ ଦୁଃଖ କରୁଅଛି ।'

ଜଙ୍ଗଲର ପରୀ ଡାକ୍ତର ତିନିଜଣଙ୍କୁ ଆଦର ସହିତ ବିଦାୟ ଦେଲା । ସେ ପିନାକିୟୋ ନିକଟକୁ ଯାଇ ତା ମୁଣ୍ଡରେ ହାତ ପକାଇଲା । ତାର ମୁଣ୍ଡ ଗରମ ଲାଗୁଥିଲା । ସେ ଖୁବ୍ ଅସୁସ୍ଥ ଥିଲା । ଡାକ୍ତରମାନେ ନିଜ ନିଜର ଅଭିମତ ବ୍ୟକ୍ତ କରି ଔଷଧ ନ ଦେଇ ଚାଲିଗଲେ । ଶେଷରେ ପରୀ ନିଜେ ଔଷଧ ତିଆରି କରି ଗୋଟିଏ ଗ୍ଲାସରେ ଆଣିଲା ଓ ଆଦର କରି କହିଲା—'ନିଅ, ଏହାକୁ ପିଇଦିଅ । କିଛିଦିନ ମଧ୍ୟରେ ତୁମର ଶରୀର ଆରୋଗ୍ୟ ହୋଇଯିବ ।'

ପିନାକିୟୋ ଗ୍ଲାସ ଆଡ଼କୁ ଚାହିଁଲା ଓ ପୁଣି ମୁହଁ ବିକୃତ କରି କାନ୍ଦ କାନ୍ଦ ସ୍ୱରରେ କହିଲା–'ଏ ଔଷଧ ପିତା ନା ମିଠା ? ପିତା ହେଲେ ମୁଁ ପିଇବି ନାହିଁ । ପିତା ଜିନିଷ ମତେ ଭଲ ଲାଗେ ନାହିଁ ।'

ପରୀ ତାକୁ ବୁଝାଇ ସୁଝାଇ କହିବାକୁ ଲାଗିଲା–'ଏ ଔଷଧ ତ ପିତା ନିଶ୍ଚୟ । କିନ୍ତୁ ଏହାକୁ ପିଇଦିଅ । ତୁମର ଦେହ ଭଲ ହୋଇଯିବ । ନିଅ, ପିଇଦିଅ । ତୁମର ମୁହଁ ମିଠା କରିବାପାଇଁ ମୁଁ ଖଣ୍ଡେ ମିଶ୍ରି ଦେବି ।'

'ଆଣ, ପ୍ରଥମେ ମିଶ୍ରି ଦିଅ, ତେବେ ଔଷଧ ପିଇବି ।'

ପରୀ ମିଶ୍ରି ଖଣ୍ଡେ ଦେଲା । ପିନାକିୟୋ ସଙ୍ଗେ ସଙ୍ଗେ କୁଡୁକୁଡୁ କରି ମିଶ୍ରି ଖଣ୍ଡିକ ଚୋବାଇ ଖାଇଦେଲା । ପୁଣି ଓଠ ଚାଟିଚୁଟି କହିଲା–'ବାଃ, ମିଶ୍ରି ଭାରି ମିଠା । ଆଉ ଦିଅ ।'

'ତୁମେ ପରା କହିଥିଲ ଯେ ମିଶ୍ରି ଖାଇସାରି ଔଷଧ ପିଇବ । ବର୍ତ୍ତମାନ ତୁମେ କଥା ରଖୁନାହଁ । ନିଅ ଔଷଧ ପିଇଦିଅ ।'

ପିନାକିୟୋ ଖୁବ୍ ଅନ୍ୟମନସ୍କଭାବେ ଔଷଧ ଗ୍ଲାସ ଧରିଲା ଓ ଶୁଙ୍ଘିଦେଇ ଓଠ ପାଖକୁ ନେଲା । ତା'ପରେ ପୁଣି ପାଟିକରି କହିଲା, 'ଏ ଔଷଧ ପିତା । ମୁଁ ପିଇବି ନାହିଁ । ଆଉ ଖଣ୍ଡେ ମିଶ୍ରି ଦିଅ ।'

ପରୀ ଆଉ ଖଣ୍ଡେ ମିଶ୍ରି ଭାଙ୍ଗିକରି ଦେଲା ଓ ଔଷଧ ପିଇବାପାଇଁ କହିଲା । ପିନାକିୟୋ ସଙ୍ଗେ ସଙ୍ଗେ ତାକୁ ଖାଇଦେଇ ବାହାନା କରି କହିଲା–'ମୁଁ ଔଷଧ ପିଇବି ନାହିଁ । ମୋ ଗୋଡ଼ତଳେ ଯେଉଁ ତକିଆ ରଖିଛ, ତା ଦ୍ୱାରା ମୋତେ ଭାରି କଷ୍ଟ ହେଉଛି । ପ୍ରଥମେ ତାକୁ ଉଠାଇଦିଅ ।'

ପରୀ ତାକୁ ମଧ୍ୟ ଉଠାଇଦେଲା । ତଥାପି ପିନାକିୟୋ ଔଷଧ ପିଇଲା ନାହିଁ । ଅନ୍ୟ ଏକ ବାହାନା କରିବାକୁ ଲାଗିଲା । ପରୀ ତାକୁ ବହୁତ ବୁଝାଇଲା କିନ୍ତୁ ସେ କିଛି ହେଲେ ଶୁଣିଲା ନାହିଁ । ସେତିକିବେଳେ ଚାରୋଟି ମୋଟା ଠେକୁଆ ଗୋଟିଏ ଚୌକି ଉଠାଇ ତା' ନିକଟରେ ଠିଆ ହେଲେ । ପିନାକିୟୋ ସେମାନଙ୍କୁ ଦେଖି ଡରିଗଲା

ଓ ପାଟିକରି କହିଲା–'ତୁମେ କିଏ ? ମୋତେ କେଉଁଆଡ଼େ ନେଇଯିବାକୁ ବସିଛ ? ମୁଁ ବର୍ତ୍ତମାନ ମରିନାହିଁ ।'

ଠେକୁଆ କହିଲା–'ହଁ ହଁ, ବର୍ତ୍ତମାନ ତୁମେ ମରିନାହଁ କିନ୍ତୁ ଅଳ୍ପ ସମୟ ପରେ ମରିଯିବ । କାରଣ ତୁମେ ଔଷଧ ପିଇବାକୁ ମନା କଲ ।' ଏହାଶୁଣି ପିନାକିୟୋ ଡରିଗଲା । ସେ ସଙ୍ଗେ ସଙ୍ଗେ ପରୀ ହାତରୁ ଔଷଧ ଗ୍ଲାସଟି ନେଇ ନିଶ୍ୱାସକେ ପିଇଦେଲା । ପରୀ ମୁରୁକି ହସିଲା ଓ ଚାରୋଟିଯାକ ଠେକୁଆ ଗୋଟି ଗୋଟି ହୋଇ ଫେରିଗଲେ ।

ଔଷଧ ପିଇବାର ଅଳ୍ପ ସମୟରେ ପରେ ପିନାକିୟୋର ଦେହ ଭଲ ହୋଇଗଲା । ସେ ବିଛଣାରୁ ଉଠି ଘରର ଏଣେତେଣେ ବୁଲିବାକୁ ଲାଗିଲା । ଏହା ଦେଖି ପରୀ ଖୁସିହୋଇ ଓ ତାକୁ ପାଖରେ ବସାଇ କଥାବାର୍ତ୍ତା କରିବାକୁ ଆରମ୍ଭ କଲା । ସେ ପିନାକିୟୋକୁ ପଚାରିଲା–'ଆଛା କହ ତ, ତୁମେ ଜଙ୍ଗଲକୁ ଆସିଲ କିପରି ? ପୁଣି ସେହି ଡାକୁ ଦୁଇଜଣ କାହିଁକି ତୁମ ପଛେ ପଛେ ଲାଗିଥିଲେ ?'

ପିନାକିୟୋ ତାକୁ ସମସ୍ତ କଥା କହିଲା । କିପରି ଯାଦୁକର ଖୁସି ହୋଇ ତାକୁ ପାଞ୍ଚୋଟି ମୋହର ଦେଇଥିଲା । କିପରି ଛୋଟା ଶୃଗାଳ ଓ କାଣୀ ବିଲେଇ ତାକୁ ଠକିବାକୁ ଚେଷ୍ଟା କରିଥିଲେ, କିପରି ସେ ଦୁଇ ଡାକୁଙ୍କ ଚକ୍ରାନ୍ତରେ ପଡ଼ିଲା ଯେଉଁମାନେ ତାକୁ ଫାଶୀରେ ଝୁଲାଇ ପଳାଇଗଲେ ।

ସବୁ ଶୁଣିବା ପରେ ପରୀ ପଚାରିଲା–'ଆଛା, ତେବେ ମୋହର ତୁମ ପାଖରେ ଅଛି ? ତୁମେ ସେଗୁଡ଼ିକ କେଉଁଠି ଲୁଚାଇ ରଖିଛ ?'

'କେଉଁଠି ହଜିଗଲା ମୋତେ ଜଣାନାହିଁ ।' ପିନାକିୟୋ ମିଛରେ କହିଦେଲା, କିନ୍ତୁ ମୋହରଗୁଡ଼ିକ ବର୍ତ୍ତମାନ ମଧ୍ୟ ତା ପାଟିରେ ଥିଲା । ଯେମିତି ସେ ମିଛ କହିଲା, ସେମିତି ତାର ଲମ୍ୱା ନାକ ଆହୁରି ଲମ୍ୱା ହୋଇଗଲା । ପରୀ ପଚାରିଲା–'ମୋହରଗୁଡ଼ିକ ତୁମେ କେଉଁଠି ହଜାଇଲ ?'

'ଏହି ଜଙ୍ଗଲରେ କେଉଁଠି ।' ସେ ପୁଣି ମିଛ କହିଲା । ତେଣୁ ତାର ନାକ ଆହୁରି ଦୁଇ ଆଙ୍ଗୁଳ ବଢ଼ିଗଲା ।

'ଯଦି ଜଙ୍ଗଲରେ ତୁମର ମୋହର ହଜିଥିବ ତେବେ ତାହା ତୁମକୁ ମିଳିଯିବ । ମୁଁ ବର୍ତ୍ତମାନ ମୋହର ଖୋଜିବାକୁ ଚାକର ପଠାଉଛି ।' ପରୀ କହିଲା ।

'ଓହୋ, ମନେପଡ଼ିଲା । ମୁଁ ମୋହର ହଜାଇ ନାହିଁ । ମୋହରଗୁଡ଼ିକ ମୋ ମୁହଁ ଭିତରେ ଥିଲା । ଯେତେବେଳେ ମୁଁ ଔଷଧ ପିଇଲି ସେଗୁଡ଼ିକ ପେଟ ଭିତରକୁ ଚାଲିଯାଇଛି । ଏ ତୃତୀୟଥର ମଧ୍ୟ ମିଛ କହିଲା । ଏଥର ତାର ନାକ ଏତେ ବଢ଼ିଗଲା ଯେ ସେ ସହଜରେ ମୁଣ୍ଡ ହଲାଇ ପାରିଲା ନାହିଁ । ତାର ଲମ୍ବା ନାକ ଦେଖି ପରୀ ହସିହସି କହିଲା—'ବାଳକ, ତୁମେ ଏପରି ମିଛ କାହିଁକି କହୁଛ ? ଦେଖୁନା, ମିଛ କହିବାରୁ ତୁମର ନାକ ବଢ଼ିଯାଉଛି ।'

ଏହାଶୁଣି ପିନାକିୟୋକୁ ଭାରି ଲାଜ ମାଡ଼ିଲା । ଲାଜରେ ସେ ତାର ମୁହଁ ଲୁଚାଇବାକୁ ଚେଷ୍ଟାକଲା । କିନ୍ତୁ ତାର ନାକ ଏତେ ଲମ୍ବ ହୋଇଯାଇଥାଏ ଯେ, ସେ ଘରୁ ବାହାରିପାରିଲା ନାହିଁ । ତାକୁ କାନ୍ଦ ମାଡ଼ିଲା । ବର୍ତ୍ତମାନ ସେ ସ୍ଥିର କଲା ଯେ ସେ ଭବିଷ୍ୟତକୁ ଆଉ ମିଛ କହିବ ନାହିଁ । ମିଛ କହିବା ଭଲ ନୁହେଁ । ମିଛ କହିଲେ ଦଣ୍ଡ ଭୋଗିବାକୁ ପଡ଼େ ଓ ଲୋକେ ନିନ୍ଦା କରନ୍ତି । ତାର ଏପରି ଦଶା ଦେଖି ପରୀ ମନରେ ଦୟା ହେଲା । ସେ ତିନିଥର ତାଳିମାରିଲା । ସଙ୍ଗେ ସଙ୍ଗେ ଅନେକ ବଢ଼େଇ ଆସି ପିନାକିୟୋର ନାକ ପାଖରେ ବସିଲେ । ସେମାନେ କାଟି ଛେଲି ତାର ନାକକୁ ଛୋଟ କରିଦେଲେ । ପିନାକିୟୋ ଭାରି ଖୁସିହେଲା ଓ ପରୀକୁ ଧନ୍ୟବାଦ ଦେଇ କହିଲା—'ତୁମେ ଭାରି ଭଲ । ତୁମ ପରି ପରୀ କେଉଁଠି ହେଲେ ମିଳିବେ ନାହିଁ ।'

ପରୀ ମଧ୍ୟ ଖୁସିହୋଇ କହିଲା—'ତୁମେ ବି ଭାରି ଭଲପିଲା । ତୁମେ ଏଠାରୁରେ ରହିଯାଅ, ମୁଁ ତୁମକୁ ନିଜର ଭାଇପରି ଦେଖିବି । ତୁମେ ମୋତେ ଭଉଣୀପରି ଦେଖ ।'

'ମୁଁ ଏଠାରେ ରହିବାକୁ ରାଜିଅଛି, କିନ୍ତୁ ମୋ ବାପା ! ତାଙ୍କର ଦଶା କଅଣ ହେବ ?'

'ମୁଁ ସବୁ ଭାବିଛି । ତୁମ ବାପାଙ୍କ ପାଖକୁ ଖବର ମଧ୍ୟ ପଠାଇଦେଇଛି । ସେ ଆଜି ରାତି ମଧ୍ୟରେ ଏଠାରେ ପହଞ୍ଚିଯିବେ ।' ପିନାକିୟୋ ଖୁସିହୋଇ ତାଳିମାରି କହିଲା—'ଠିକ୍ ଠିକ୍, ତୁମେ ଭାରି ଭଲଲୋକ ପରୀଭଉଣୀ । କିନ୍ତୁ ମୁଁ ମୋ ବାପାଙ୍କ

ସହିତ ରାସ୍ତାରେ ସାକ୍ଷାତ କରିବାକୁ ଚାହେଁ । ଅନେକ ଦିନୁ ତାଙ୍କ ସହିତ ମୁଁ ଦେଖାକରି ନାହିଁ ।'

'ଭଲକଥା । ଯାଅ ସେ ସନ୍ଧ୍ୟାବେଳକୁ ଏଠାରେ ପହଞ୍ଚିବେ । ଯଦି ତୁମର ମନ ନ ମାନୁଛି ତେବେ ତୁମେ ରାସ୍ତାରେ ହିଁ ତାଙ୍କୁ ସାକ୍ଷାତ କର । କିନ୍ତୁ ଖୁବ୍ ସାବଧାନ ଥିବ । ରାସ୍ତା ଜଙ୍ଗଲ ଭିତରଦେଇ ଯାଇଛି ।'

ପିନାକିୟୋ ତାର ବାପାଙ୍କୁ ସ୍ୱାଗତ ଜଣାଇବାପାଇଁ ବାହାରିପଡ଼ିଲା । ଯେତେବେଳେ ଚାଲୁ ଚାଲୁ ସେହି ଗଛ ନିକଟରେ ପହଞ୍ଚିଲା (ଯେଉଁ ଗଛରେ ସେ ଫାଶୀରେ ଝୁଲୁଥିଲା), ସେତେବେଳେ ବୁଦା ପାଖରୁ ଶୃଗାଳ ଓ ବିଲେଇ ବାହାରି ଆସିଲେ । ଶୃଗାଳ ନିକଟରେ ପହଞ୍ଚି ଅତି ଆଦରରେ କହିଲା–'ଆରେ ପିନାକିୟୋ ! ତୁମେ ଏଠାରେ କଅଣ କରୁଛ ଭାଇ ?'

'ହଁ ତୁମେ ଏଠାରେ କଅଣ କରୁଛ ଭାଇ ?' ବିଲେଇ କହିଲା ।

'କିଛି ପଚାର ନାହିଁ । ବଡ଼ ବିପଦରେ ମୁଁ ପଡ଼ିଲି । ସେଦିନ ରାତିରେ ଯେତେବେଳେ ତୁମେ ମୋତେ ଛାଡ଼ିଦେଇ ଚାଲିଆସିଲ, ତା'ପରେ କଅଣ ହେଲା ଜାଣ ? ରାସ୍ତାରେ ଦୁଇଜଣ ଡାକୁ ଆସି ପହଞ୍ଚିଲେ । ସେମାନେ ମୋଠାରୁ ମୋହରତକ ଛଡ଼ାଇ ନେବାକୁ ବସିଥିଲେ ।' ପିନାକିୟୋ କହିଲା ।

'ଡାକୁ ? ମୋହର ଛଡ଼ାଇ ନେବାକୁ ବସିଥିଲେ ! ଭାରି ବଦମାସ୍ ତ !' ଶୃଗାଳ କହିଲା ।

'ହଁ ସତରେ ଭାରି ବଦମାସ୍ ।' ବିଲେଇ କହିଲା ।

'ମୁଁ ମୋର ଜୀବନ ରକ୍ଷା କରି ପଳାଇଲି । କିନ୍ତୁ ସେମାନେ ମୋ ପଛେ ପଛେ ରହିଲେ । ଶେଷରେ ସେମାନେ ମୋତେ ଧରି ଏହି ଗଛରେ ଫାଶୀ ଦେଇଥିଲେ ।

'ଆହା, କିପରି ଦିନକାଳ ଆସି ପହଞ୍ଚିଲା । ବର୍ତ୍ତମାନ ତ ଆମପରି ଭଲଲୋକର ଏଠାରେ ରହିବା ଅସମ୍ଭବ ।' ଶୃଗାଳ ସହାନୁଭୂତି ଦେଖାଇ କହିଲା ।

'ହଁ, କେହି ତ ରହିପାରିବେ ନାହିଁ ।' ବିଲେଇ କହିଲା ।

ହଠାତ୍ ପିନାକିୟୋର ଦୃଷ୍ଟି ବିଲେଇର ଗୋଡ଼ ଉପରେ ପଡ଼ିଲା । ଗୋଡ଼ ପାପୁଲି ତାର ନ ଥିଲା । ସେ ଛୋଟେଇ ଛୋଟେଇ ଚାଲୁଥାଏ । ପିନାକିୟୋ ଆଶ୍ଚର୍ଯ୍ୟ ହୋଇ ପଚାରିଲା–'ତୁମ ଗୋଡ଼ର ପାପୁଲି କଅଣ ହେଲା ?'

ବିଲେଇ କହିବାକୁ ଲାଜ ଲାଜ ହେଲା । ତାକୁ କୌଣସି ଉତ୍ତର ମିଳିଲା ନାହିଁ । ଏତିକିବେଳେ ଶୃଗାଳ କହିଲା–'ଆରେ ସେ ଲାଜ କରୁଛି, କହିବ ନାହିଁ । ମୁଁ କହୁଛି, ରାସ୍ତାରେ ଗୋଟିଏ ଭାଲୁ ଦେଖାହେଲା । ସେ ଅନେକ ଦିନୁ ଭୋକିଲା ଥାଏ । ରାସ୍ତାରେ ବସି ଭିକ ମାଗୁଥାଏ । ଆମେ ବା କଣ ଭିକ ଦିଅନ୍ତୁ । ଶେଷରେ ବିଲେଇର ତା ପ୍ରତି ଦୟା ହେଲା । ତେଣୁ ସେ ତାର ଗୋଟିଏ ପାପୁଲି କାଟି ଭାଲୁକୁ ଖାଇବାକୁ ଦେଲା । ସେହିଦିନଠାରୁ ଏ ଛୋଟୀ ହୋଇଗଲା ।

ପିନାକିୟୋ ଏହା ଶୁଣି ଭାରି ଖୁସି ହେଲା । କହିଲା–'ବାଃ ସାବାସ୍, ଯଦି ସବୁ ବିଲେଇ ତୁମରି ପରି ହୁଅନ୍ତି ତେବେ ମୂଷାମାନଙ୍କ ଭାଗ୍ୟ ଫେରିଯିବ ।'

'ଆଚ୍ଛା, ଏତେବେଳେ ତୁମେ କୁଆଡ଼େ ଯାଉଛ ? ତୁମ ମୋହର କଅଣ ହେଲା ? ସେଗୁଡ଼ିକ କଅଣ ଜାଦୁପଡ଼ିଆରେ ପୋତିବାକୁ ଯିବନାହିଁ ?'

'ମୋହର ତ ମୋ ପାଖରେ ଅଛି । ଚାରୋଟି ବଞ୍ଚିଛି । କିନ୍ତୁ ଆଜି ମୁଁ ମୋ ବାପାଙ୍କୁ ସ୍ୱାଗତ ଜଣାଇବାପାଇଁ ଯାଉଛି । ମୋହର ପୋତିବାପାଇଁ ଅନ୍ୟ କେଉଁଦିନ ଯିବି ।'

'ଅନ୍ୟ କେଉଁଦିନ ? କିନ୍ତୁ ତୁମେ ଜାଣ, ସେହି ପଡ଼ିଆ ଅନ୍ୟ ଜଣେ କିଣି ନେଲାଣି । ଆଜି ବ୍ୟତୀତ କାଲିଠାରୁ ସେଠାକୁ କାହାରିକୁ ଯିବାକୁ ଦିଆଯିବ ନାହିଁ । ଚାଲ, ଏଠାରୁ ମାତ୍ର ଦୁଇ ମାଇଲ ଦୂର ହେବ । ଅଳ୍ପ ସମୟ ମଧ୍ୟରେ ତୁମେ ତୁମର ଚାରୋଟି ମୋହରକୁ ଦୁଇହଜାର କରିପାରିବ । ଇଚ୍ଛା ଅଛି ତ ଚାଲ ।'

ପିନାକିୟୋର ତ ଅଳ୍ପ ବୟସ । ସେ ସବୁ ଭୁଲିଗଲା । ପରୀ ତାକୁ ମନା କରିଥିଲା । ସେ କଥା ମଧ୍ୟ ତାର ମନେ ରହିଲା ନାହିଁ । ସେ ସେହି ଦୁହିଁଙ୍କ ସହିତ ବାହାରି ପଡ଼ିଲା ।

ଯାଉଯାଉ ସେମାନେ ଗୋଟିଏ ଛୋଟ ସହରରେ ପହଞ୍ଚିଲେ । ସହରଟିର ନାମ 'ବିଡ଼ମ ନଗର' । ଏଥିରେ ସାରା ଦୁନିଆର ବଦମାସ୍ ଜନ୍ତୁ ଓ ଠକ ପଶୁପକ୍ଷୀ ରହୁଥିଲେ । ସେହି ସହରକୁ ଟପି ସେମାନେ ଗୋଟିଏ ପଡ଼ିଆରେ ପହଞ୍ଚିଲେ । ଶୃଗାଳ

କହିଲା–'ଆମେ ଆସି ପହଞ୍ଚିଗଲେଣି । ଏଇ ହେଉଛି ଯାଦୁପଡ଼ିଆ, ବର୍ତ୍ତମାନ ତୁମେ ଶୀଘ୍ର ଶୀଘ୍ର ଗାତ ଖୋଳି ମୋହର ପୋତିଦିଅ ।'

ପିନାକିୟୋ ଗୋଟିଏ ବଡ଼ ଗାତ ଖୋଳିଲା ଓ ତହିଁରେ ଚାରୋଟି ମୋହର ରଖିଦେଲା । ପୁଣି ଗାତଟି ପୋତିଦେଲା । ତା'ପରେ ପାଣି ଆଣିବାପାଇଁ ଗଲା । ପାଣି ଆଣି ଚାରାରେ ଛିଞ୍ଚିଦେଲା । ଶୃଗାଳ କହିଲା–'ବର୍ତ୍ତମାନ ଆମେ ଏଠାରୁ ଚାଲିଯିବା ହିଁ ଭଲହେବ । ତୁମେ କିଛି ସମୟ ପରେ ଆସିବ ଓ ଏହି ଗଛରୁ ମୋହର ତୋଳିନେବ ।'

କାଠକୁଣ୍ଢେଇ ଏହା ଶୁଣି ଭାରି ଖୁସି ହେଲା । କାରଣ ଅଳ୍ପ ସମୟ ପରେ ତାକୁ ଦୁଇ ହଜାର ମୋହର ମିଳିଯିବ । ତାର ସମସ୍ତ ଦରିଦ୍ରତା ଏହାଦ୍ୱାରା ଦୂର ହେବ । ସେ ପୁଣି କହିଲା ଯେ ପଇସା ମିଳିବା ପରେ ମୁଁ ଦୁହିଁଙ୍କୁ ବକ୍‌ସିସ୍ ଦେବି ।

'ଆରେ ନା ନା, ଆମେ ବକ୍‌ସିସ୍ ମାଗୁନାହୁଁ । ଆମେ ତ କେବଳ ଅନ୍ୟର ମଙ୍ଗଳ କରୁ । ଏଥିରେ ତୁମର ଲାଭ ହେବ, ଏହା ଦେଖି ଆମେ ବହୁତ ଖୁସି ହେବୁ ।' ତା'ପରେ ସେ ଦୁହେଁ ପିନାକିୟୋଠାରୁ ବିଦାୟ ନେଇ ସେଠାରୁ ଚାଲିଗଲେ ।

ଦୁହେଁ ସେଠାରୁ ଚାଲିଯିବା ପରେ ପିନାକିୟୋ ମଧ୍ୟ ସହରକୁ ଫେରିଆସିଲା । ସେ ଅପେକ୍ଷା କରିବାକୁ ଲାଗିଲା ଯେ କେତେବେଳେ ସନ୍ଧ୍ୟା ହେବ ଓ କେତେବେଳେ ସେ ଯାଦୁପଡ଼ିଆରେ ପହଞ୍ଚିବ । ତା ଆଖିଆଗରେ ମୋହର ଲଦି ହୋଇଥିବା ଗଛ ନାଚୁଥାଏ । ସେ ମନେ ମନେ ହିସାବ କରୁଥାଏ ଯେ ଯଦି ଗଛରେ ଏକହଜାର ମୋହର ପରିବର୍ତ୍ତେ ପାଞ୍ଚହଜାର ମୋହର ଫଳିଥାଏ, ତେବେ ଭାରି ଭଲ ହେବ । ଶେଷରେ ତାର ମନ ଥୟ ହେଲା ନାହିଁ । ସେ ଧୀରେ ଧୀରେ ଟହଲ ମାରୁ ମାରୁ ଯାଦୁପଡ଼ିଆରେ ପହଞ୍ଚିଗଲା । ସେ ଭାବିଥିଲା, ତାକୁ ଦୂରରୁ କୌଣସି ଗଛ ଦେଖାଯିବ । କିନ୍ତୁ ସେପରି କୌଣସି ଗଛ ତାର ଦୃଷ୍ଟିଗୋଚର ହେଲାନାହିଁ । ଧୀରେ ଧୀରେ ଆଗକୁ ଚାଲିଲା ।

ଗାତ ନିକଟରେ ପହଞ୍ଚିଲା, ଯେଉଁଠି କି ସେ ମୋହର ଲଗାଇଥିଲା । ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ ସେଠାରେ ମଧ୍ୟ କିଛି ନଥିଲା । ଘଟଣା କଅଣ କିଛି ବୁଝିପାରିଲା ନାହିଁ । ଗଛ ଉଠିଲା ନାହିଁ କାହିଁକି ? ହଠାତ୍ ତା ମୁଣ୍ଡ ଉପରେ କିଏ ଖୁବ୍ ଜୋର୍‌ରେ ହସିବାର ଶବ୍ଦ ଶୁଣାଗଲା । ସେ ଉପରକୁ ମୁଣ୍ଡ ଟେକି ଦେଖିଲା ଯେ, ଗୋଟିଏ ବଡ଼

ଶୁଆ ଗଛଡାଳରେ ବସି ହସୁଛି ଓ ତାର ଡେଣା ସଫା କରୁଛି । ପିନାକିୟୋ ମନମାରି କହିଲା–'ତୁମେ ହସୁଛ କାହିଁକି ?'

ଶୁଆ ହସି ହସି କହିଲା–'ମୁଁ ମୋର ଡେଣା ସଫା କରୁଛି, ଏଣୁ ମୋତେ ସଲସଲ ଲାଗିବାରୁ ମୁଁ ହସୁଛି ।'

ତାର କଥା ଶୁଣି ପିନାକିୟୋକୁ ବିରକ୍ତ ଲାଗିଲା । କିନ୍ତୁ ସେ କିଛି ନ କହି ବୋହିଯାଉଥିବା ନାଳରୁ ଜୋତାରେ ପାଣି ଭର୍ତ୍ତିକରି ଆଣିଲା ଓ ମୋହର ପୋତିଥିବା ସ୍ଥାନରେ ଛିଞ୍ଚିଲା । ଶୁଆ ପୁଣି ହସିଲା । ପିନାକିୟୋ ମନରେ ରାଗ ହେଲା । ସେ ପାଟିକରି କହିଲା–'ତୁମେ ଭାରି ଗର୍ବୀ ଶୁଆ ପରି ଜଣାପଡୁଛ । ଏପରି କାହିଁକି ହସୁଛ ?'

'ସେଇ ମୂର୍ଖମାନଙ୍କୁ ଦେଖି ମୋତେ ହସ ମାଡୁଛି, ଯେଉଁମାନେ କି ଅନ୍ୟମାନଙ୍କ କଥାରେ ବିଶ୍ୱାସ କରନ୍ତି ।'

'ତୁମେ କଅଣ ମୋତେ ହିଁ ଉଦ୍ଦେଶ୍ୟ କରି କହୁଛ !'

'ହଁ ପିନାକିୟୋ, ମୁଁ ତୁମକୁ ହିଁ କହୁଛି । ଆଚ୍ଛା, ତୁମେ କିପରି ବିଶ୍ୱାସ କଲ ଯେ ଗହମ ଓ ଚିନା ପରି ମୋହର ମଧ୍ୟ ଗଛ ହୋଇପାରେ !'

'ଭଲକରି କହ !' ପିନାକିୟୋ ରାଗିଯାଇ କହିଲା ।

'ହଁ ହଁ, କହୁଛି ଶୁଣ । ଯେତେବେଳେ ତୁମେ ସହରରେ ଥିଲ, ସେତେବେଳେ ଶୃଗାଳ ଓ ବିଲେଇ ଚୁପ୍‌ଚାପ୍ ସେଠାକୁ ଯାଇ ତୁମର ମୋହରଗୁଡ଼ିକୁ ଖୋଳି ନେଇଗଲେ । ବର୍ତ୍ତମାନ ଯଦି କେହି ତାଙ୍କୁ ଧରାଇଦିଏ ତେବେ ଜାଣିବି ଯେ ସେ ସବୁଠାରୁ ଚାଲାକ୍ ।'

ଏହାଶୁଣି ପିନାକିୟୋ ଆଁ-କରି ରହିଗଲା । ଶୁଆ କଥାରେ ତାର ବିଶ୍ୱାସ ହେଲା ନାହିଁ । ସେ ନିଜ ହାତରେ ମାଟି ଖୋଳିବାକୁ ଆରମ୍ଭ କଲା । ପାଣି ଛିଞ୍ଚିଥିବାରୁ ମାଟି ଓଦା ଥିଲା । ସେ ଖୋଳି ଖୋଳି ଚାଲିଲା । ଏପରିକି ଖୋଳି ଖୋଳି ସେ ତାକୁ ପୁରୁଷେ ପର୍ଯ୍ୟନ୍ତ ଖୋଳିଲା, କିନ୍ତୁ ତା ହାତକୁ କିଛି ଲାଗିଲା ନାହିଁ ।

ସେ ଦୁହିଁଙ୍କ ଉପରେ ଭାରି ରାଗିଲା । ଦୌଡ଼ି ଦୌଡ଼ି ବିଡ଼ମ ନଗରରେ ପହଞ୍ଚିଲା । ସେଠାରେ ସେ ସେମାନଙ୍କ ନାମରେ ନାଲିଶ୍ କଲା ।

ସେତେବେଳେ ବିଚାରପତି ଆସନରେ ଗୋଟିଏ ବଡ଼ ବାନର ବସିଥାଏ । ସେ ଖୁବ୍ ବୁଢ଼ା ହୋଇଯାଇଥାଏ । ତାର ଦାଢ଼ି ପାଚିଯାଇଥିଲା । ଆଖିରେ ଚଷମାର ଆବଶ୍ୟକ ହେଉଥିଲା । ପିନାକିୟୋ ଆଶ୍ଚର୍ଯ୍ୟଭାବେ ସମସ୍ତ ଘଟଣା ତା ଆଗରେ କହିଗଲା ଓ ଅପରାଧୀମାନଙ୍କର ନାମ କହି ତା' ନିକଟରେ ବିଚାର ପ୍ରାର୍ଥନା କଲା ।

ଜଜ୍ ସାହେବ ଧ୍ୟାନଦେଇ ତାର କଥା ଶୁଣିଲେ । ପିନାକିୟୋଠାରୁ ସମସ୍ତ ଘଟଣା ଶୁଣିସାରି ଘଣ୍ଟି ବଜାଇ ଦୁଇଜଣ ସିପାହୀ ଡକାଇଲେ । ସଙ୍ଗେ ସଙ୍ଗେ ଦୁଇଟି କୁକୁର ସିପାହୀ ବେଶରେ ଆସି ଜଜ୍ ସାହେବଙ୍କୁ ସଲାମ କରି ଛିଡ଼ାହେଲେ । ବାନର କାଠକୁଣ୍ଢେଇ ଆଡ଼କୁ ଇସାରା କରି କହିଲା–'ଏହି ବୋକାର ମୋହର ଚୋରି ହୋଇଯାଇଛି । ତେଣୁ ତାକୁ ସଙ୍ଗେ ସଙ୍ଗେ ଗିରଫ କରି ଜେଲରେ ରଖିଦିଅ ।'

ଜେଲ କଥା ଶୁଣି କାଠକୁଣ୍ଢେଇ ତଣ୍ଟି ଅଠା ହୋଇଆସିଲା । ସେ ଏହା ବିରୁଦ୍ଧରେ କିଛି କହିବାକୁ ଯାଉଥିଲା । କିନ୍ତୁ କୁକୁରମାନେ ତାର ମୁହଁ ବନ୍ଦ କରିଦେଲେ ଏବଂ ସଙ୍ଗେ ସଙ୍ଗେ ତାକୁ ଟାଣି ଟାଣି ଅଦାଲତ ବାହାରକୁ ନେଇଆସିଲେ ।

ପିନାକିୟୋକୁ ଚାରିମାସ ସଜା ହେଲା । ତାକୁ ଚାରିମାସ ଜେଲରେ କଟାଇବାକୁ ପଡ଼ିଲା । ଯଦି ଗୋଟିଏ ଆକସ୍ମିକ ଘଟଣା ନ ଘଟିଥାନ୍ତା ତେବେ ସେ ଜେଲରୁ ମୁକ୍ତି ପାଇ ନ ଥାନ୍ତା ।

ଅସଲ କଥା—ବିଡ଼ମ ନଗରର ବାଦଶା କେଉଁଠୁ ଯୁଦ୍ଧରେ ଜୟକରି ଫେରିଥାଏ । ତେଣୁ ସେ ଖୁବ୍ ଜାକଜମକ ସହ ବିଜୟ ଉତ୍ସବ ପାଳନ କଲା ଓ ସମସ୍ତ କଇଦୀମାନଙ୍କୁ ମୁକ୍ତ କରିଦିଆଗଲା । ଯେତେବେଳେ ସମସ୍ତ କଇଦୀମାନଙ୍କୁ ଛାଡ଼ି ଦିଆଯାଉଥାଏ, ସେତେବେଳେ ପିନାକିୟୋ ତାର ଜେଲରଙ୍କୁ କହିଲା–'ଯେତେବେଳେ ସମସ୍ତ କଇଦୀମାନଙ୍କୁ ଛାଡ଼ି ଦିଆଯାଉଛି ତେବେ ମୁଁ ମଧ ଜେଲରୁ ବାହାରିବି ।'

'ନା ନା, ତୁମେ ଯାଇପାରିବ ନାହିଁ । କାରଣ ତୁମେ ଅଭାଗାମାନଙ୍କର ମଧ୍ୟରେ ଅଛ ।'

ପିନାକିୟୋ ତାକୁ ଅନେକ ପ୍ରକାରେ ବୁଝାଇବାକୁ ଚେଷ୍ଟା କଲା ।

'ନା ନା, ମୋତେ ମଧ୍ୟ ଛାଡ଼ିଦିଅନ୍ତୁ ସାହେବ !'

ପିନାକିୟୋ ପ୍ରତି ଜେଲରଙ୍କ ଦୟା ହେଲା, ତେଣୁ ସେ ତାକୁ ଛାଡ଼ିଦେଲେ ।

ଜେଲରୁ ବାହାରି ପିନାକିୟୋ ଏତେ ଖୁସି ହେଲା ଯେ ଆଉ କହନି । ସେ ଶୀଘ୍ର ମୁଣ୍ଡ ଉପରେ ଗୋଡ଼ ରଖି ବିଡ଼ମ ନଗରୀକୁ ପଳାଇଲା । ଯେଉଁ ରାସ୍ତା ଜଙ୍ଗଲ ଦେଇ ପରୀମହଲକୁ ଯାଇଥିଲା, ସେହି ରାସ୍ତା ଧରିଲା । ବର୍ଷାଦିନ । ତେଣୁ ରାସ୍ତା କାଦୁଅ ହୋଇଥାଏ । ସେ ବାରମ୍ବାର ରାସ୍ତାରେ ପଡ଼ିଯାଉଥାଏ । ତଥାପି ଟିକିଏ ହେଲେ ବିଶ୍ରାମ କରିବାର ନାମ ଧରୁ ନ ଥାଏ । ବାପା ଓ ପରୀଭଉଣୀ ସହିତ ସାକ୍ଷାତ କରିବାପାଇଁ ତା ମନ ଉଚ୍ଚାଟ ହୋଇଥାଏ । କିଛି ସମୟ ପରେ ସେ କାଦୁଅରେ ଜୁଡୁବୁଡୁ ହୋଇଗଲା । ତଥାପି ସେ କୌଣସିଠାରେ ଠିଆ ହେଉନଥାଏ । ବାରମ୍ବାର ଭାବୁଥାଏ ଯେ, ମୁଁ ଘରୁ ବାହାରି ଆସିବାଦ୍ୱାରା ଯେଉଁ ଭୁଲ କଲି, ସେଥିପାଇଁ କେତେ ଦଣ୍ଡ ଭୋଗିବାକୁ ପଡୁଛି । କିନ୍ତୁ ଏ ଦଣ୍ଡ ମୋତେ ମିଳିବା ଉଚିତ । କାରଣ ମୁଁ କାହାରି କଥା ମାନିଲି ନାହିଁ । ମୁଁ କେଡ଼େ ଖରାପ ପିଲା । ମୁଁ ପରୀ ଆଗରେ ମଧ୍ୟ ମିଛ କହିଲି । ସେ ପୁଣି ମୋର ଛୋଟ ଭଉଣୀ । ବର୍ତ୍ତମାନ ମୁଁ ଫେରିଗଲେ ତା ସହିତ ଖୁବ୍ ଭଲ ବ୍ୟବହାର କରିବି । କାରଣ ସେ ମୋର ପ୍ରାଣ ରକ୍ଷା କରିଛି ଓ ମୋତେ ସାହାଯ୍ୟ କରିଛି ।

ଏହିପରି ଭାବି ଭାବି ସେ ଆଗକୁ ଚାଲୁଥାଏ । ହଠାତ୍ ଚମକିପଡ଼ି ସେ ଠିଆ ହୋଇଗଲା ଓ ଚାରିପଦ ପଛକୁ ଘୁଞ୍ଚିଗଲା । ରାସ୍ତାରେ ଗୋଟିଏ ବଡ଼ ସାପ ରାସ୍ତା ବନ୍ଦକରି ପଡ଼ିଥାଏ । ତାର ରଙ୍ଗ ହଳଦିଆ ଓ ଆଖି ଲାଲ ଦେଖାଯାଉଥାଏ । ପୁଣି ତା ଲାଞ୍ଜରେ କଣ୍ଟା ଥାଏ ଓ ତହିଁରୁ ଧୂଆଁ ବାହାରୁଥାଏ । ପିନାକିୟୋ ଭୟରେ ସେଠାରେ ଠିଆ ହୋଇଗଲା । ଯେତେବେଳେ ତାର ଭୟ ଟିକିଏ କମିଗଲା, ସେ ଦୌଡ଼ିଯାଇ ନିକଟରେ ଥିବା ଏକ ବଡ଼ ପଥର ଉପରକୁ ଚଢ଼ିଗଲା । ସେଠାରେ ବସି ବସି ସେ ସାପର ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲା । ଘଣ୍ଟାଏ ଗଲା, ଦୁଇଘଣ୍ଟା ଗଲା, ତିନିଘଣ୍ଟା ଗଲା, କିନ୍ତୁ ସାପ ତିଳେହେଲେ ସେଠାରୁ ଘୁଞ୍ଚିଲା ନାହିଁ । ବର୍ତ୍ତମାନ ସୁଦ୍ଧା ତାର ଆଖି ଦୁଇଟି ଜଳୁଥାଏ ଓ ଲାଞ୍ଜରୁ ଧୂଆଁ ବାହାରୁଥାଏ ।

ଅନେକ ଡେରି ହୋଇଯିବାରୁ ପିନାକିୟୋ ସାହସ କଲା । ସେ କିଛିଦୂର ଆଗକୁ ଗଲା ଓ ତାର କଣ୍ଠସ୍ୱରକୁ ମଧୁର କରି କହିଲା–'ସର୍ପରାଜ, କଅଣ ଆପଣ ଅଳ୍ପ ଟିକିଏ ଘୁଞ୍ଚିଯାଇ ମୋତେ ଆଗକୁ ଛାଡ଼ିଦେବେ ?'

କିନ୍ତୁ ତା କଥା ସାପ ଶୁଣିଲା ନାହିଁ । ସେ ଯେପରି କୌଣସି କାନ୍ଥକୁ କହୁଥାଏ । ସେ ଆହୁରି ମଧୁରଭାବେ କହିଲା–'ସର୍ପରାଜ, ଆପଣ ତ ଜାଣନ୍ତି ଯେ, ମୁଁ ଘରକୁ ଯାଉଅଛି । ମୋ ବାପା ମୋ ବାଟ ଚାହିଁଥିବେ । ସେଠାରେ ମୋର ଗୋଟିଏ ଛୋଟ ଭଉଣୀ ଅଛି ଯେ କି ଏହି ଜଙ୍ଗଲର ରାଣୀ । ଆପଣ ମୋତେ ଅଳ୍ପ ଟିକିଏ ରାସ୍ତା ଛାଡ଼ିଦେବେ କି ?'

ଏହା କହି ସେ ଜବାବ ଅପେକ୍ଷାରେ ରହିଲା । କିନ୍ତୁ ସାପ ଟିକିଏ ହେଲେ ହଲିଲା ନାହିଁ । ଓଲଟି ଆଖି ବୁଜିଦେଲା । ତା ଲାଞ୍ଜରୁ ଧୂଆଁ ବାହାରିବା ମଧ ବନ୍ଦ ହୋଇଗଲା ।

ଆରେ ! ଏ କଅଣ ମରିଗଲା ନା କଅଣ ? ପିନାକିୟୋ ଖୁସି ହୋଇ ଭାବିଲା, ବର୍ତ୍ତମାନ ସେ ସହଜରେ ଚାଲି ଯାଇପାରିବ । କିନ୍ତୁ ସେ ସାପ ନିକଟରେ ପହଞ୍ଚୁ ପହଞ୍ଚୁ ସାପ ଠିଆ ହୋଇଗଲା । ସେ ଆଖି ମିଟିମିଟି କରିବାକୁ ଆରମ୍ଭ କଲା ଓ ତା ଲାଞ୍ଜରୁ ଧୂଆଁ ବାହାରିବାକୁ ଲାଗିଲା । ସେ ବାରମ୍ବାର ତାର ଭୟଙ୍କର ମୁହଁକୁ ପାକୁ ପାକୁ କଲା । ପିନାକିୟୋ ଭୟରେ ପଳାଇଲା କିନ୍ତୁ ତାର ଗୋଡ଼ ଠିକ୍ ଜାଗାରେ ପଡ଼ିଲା ନାହିଁ । ଯାଉଯାଉ କାଦୁଅରେ ଗଳିପଡ଼ିଲା ।

ପିନାକିୟୋ ଅଧାଅଧି କାଦୁଅରେ ଗଳିପଡ଼ିଲା । ତାର ମୁଣ୍ଡ କାଦୁଅ ଭିତରେ ଓ ଗୋଡ଼ ପବନରେ ଛଟପଟ ହେବାକୁ ଲାଗିଲା ।

ତାର ଏହି ଅବସ୍ଥା ଦେଖି ସାପ ହସି ପକାଇଲା । କାଦୁଅରେ ପିନାକିୟୋର ଗୋଡ଼ ଦୁଇଟି ଛଟପଟ ହେଉଥିବା ଦେଖି ତାର ହସ ଆଉ ବନ୍ଦ ହେଲା ନାହିଁ । ହସି ହସି ସେ ତଳେ ପଡ଼ିଗଲା । ସେ ଏତେ ହସିଲା ଯେ ହସି ହସି ତା ଛାତି ଫାଟିଗଲା ଓ ସେ ମରିଗଲା ।

ପିନାକିୟୋ ବହୁ କଷ୍ଟରେ କାଦୁଅରୁ ଉଠିଲା । ଯେତେବେଳେ ସେ ଦେଖିଲା ଯେ ସାପଟା ପ୍ରକୃତ ମରିଯାଇଛି, ସେତେବେଳେ ସେ ତା' ପାଖ ଦେଇ ଖୁବ୍ ଜୋର୍‌ରେ ଦୌଡ଼ି ପଳାଇଲା । ରାତି ଅନେକ ଥାଏ । ସେ ଅନ୍ଧାର ହେବା ପୂର୍ବରୁ ପରୀମହଲରେ ପହଞ୍ଚିଯିବାକୁ ବସିଥାଏ । କିନ୍ତୁ କିଛି ଦୂର ଯିବାପରେ ତାକୁ ଖୁବ୍ ଭୋକ ହେଲା । ସେ ଦେଖିଲା ଯେ ନିକଟରେ ଥିବା ବଗିଚାରେ ଅଙ୍ଗୁରଗୁଡ଼ିକ ପେଣ୍ଡା ପେଣ୍ଡା ହୋଇ ଝୁଲୁଛି । ସେ ଅଙ୍ଗୁର ତୋଳିବାପାଇଁ ଯେମିତି ଆଗକୁ ବଢ଼ିଛି, ସେମିତି କୌଣସି ଗୋଟିଏ ଜିନିଷ ତାର ଗୋଡ଼ରେ ଛନ୍ଦିହୋଇଗଲା । ସେଥିରୁ ଗୋଡ଼ ଛଡ଼ାଇବାପାଇଁ ଏତେ ବଳ ପ୍ରୟୋଗ କଲା ଯେ, ତା' ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲେ । ଗୋଡ଼ ମଧ ଖୁବ୍ ଦରଜ ହୋଇଯାଉଥାଏ । ପ୍ରକୃତରେ ତାହାର ଗୋଡ଼ ଲୁହାର ଗୋଟିଏ ଶିକୁଳିରେ ଛନ୍ଦି ହୋଇଯାଇଥାଏ । ଏହି ଜାଲ ଜଣେ କୃଷକ ଜଙ୍ଗଲି ବିଲେଇ ଧରିବାପାଇଁ ବିଛାଇଥିଲା; କାରଣ ସେମାନେ ରାତିରେ ଚୁପ୍‌ଚାପ୍ ଆସି ତାର କୁକୁଡ଼ାମାନଙ୍କୁ ଧରିନିଅନ୍ତି ।

ପିନାକିୟୋ ଖୁବ୍ ଜୋର୍‌ରେ ପାଟି କରିବାକୁ ଲାଗିଲା ଓ କାନ୍ଦିବାକୁ ଲାଗିଲା । କିନ୍ତୁ କିଏ ଥିଲା ଯେ ତାର ଡାକ ଶୁଣିବ ! ରାସ୍ତା ଶୂନ୍‌ଶାନ ପଡ଼ିଥାଏ ଓ ସେହି ରାସ୍ତାରେ ସନ୍ଧ୍ୟାବେଳେ କୌଣସି ଲୋକ ଯାତାୟାତ କରନ୍ତି ନାହିଁ । ଧୀରେ ଧୀରେ ରାତି ବେଶି ହେବାକୁ ଲାଗିଲା । ପିନାକିୟୋ ଗୋଡ଼ରେ ଲୁହାର ଶିକୁଳି ଏପରି ଶକ୍ତଭାବେ ଚାପିହୋଇ ଯାଇଥାଏ ଯେ ଦରଜରେ ତାର ପ୍ରାଣ ବାହାରିଗଲା ପରି ଲାଗୁଥାଏ ।

ଏହି ସମୟରେ ଜୁଗୁନୁ ନାମକ ତାର ଜଣେ ପରିଚିତ ବନ୍ଧୁ ତା' ମୁଣ୍ଡରେ ହାତ ବୁଲାଇଲା । ପିନାକିୟୋ ତାକୁ କହିଲା–'ଜୁଗୁନୁ ଭାଇ, ମୋ ଉପରେ ଟିକିଏ ଦୟାକର । କୌଣସି ପ୍ରକାରେ ମୋତେ ଏଥିରୁ ଉଦ୍ଧାର କର ।'

ଜୁଗୁନୁ କହିଲା–'ମୁଁ ବୁଝୁଛି, ତୁମକୁ କେତେଦୂର କଷ୍ଟ ହେଉଛି । କିନ୍ତୁ ଏଥିରେ ପଡ଼ିଲ କିପରି ?'

ମୁଁ ଅଙ୍ଗୁର ତୋଳିବାପାଇଁ ଆସିଥିଲି ।

'ଅଙ୍ଗୁରଗୁଡ଼ିକ କ'ଣ ତୁମର ?'

'ନା ।'

'ଅନ୍ୟର ଜିନିଷ ଚୋରାଇ ନେବାପାଇଁ ତୁମକୁ ଶିଖାଇଲା କିଏ ସେ ?'

'ମୋତେ ଭୋକ ଲାଗୁଥିଲା ।'

'କିନ୍ତୁ ଭୋକ ସକାଶେ ଅନ୍ୟର ଜିନିଷ ଚୋରାଇବା ତ ଉଚିତ ନୁହେଁ ।'

'ହଁ ହଁ, ଏକଥା ସତ ।' ପିନାକିୟୋ କାନ୍ଦି କାନ୍ଦି କହିଲା–'ଆଉ କେବେ ମୁଁ ଏପରି କାମ କରିବି ନାହିଁ । କିନ୍ତୁ ବର୍ତ୍ତମାନ ତ'...

ଏତିକିବେଳେ ପଛରୁ କାହାର ପାଦ ଶବ୍ଦ ଶୁଣାଗଲା । କୌଣସି ବିଲେଇ ଫାଶରେ ପଡ଼ିଛନ୍ତି କି ନାହିଁ କୃଷକଟି ଦେଖିବାକୁ ଆସିଥିଲା । ସେ ତା' କୋଟ ଭିତରେ ଗୋଟିଏ ଲଣ୍ଠନ ଲୁଚାଇ ରଖିଥିଲା । ପାଖକୁ ଆସି ସେ ଲଣ୍ଠନ ବାହାର କଲା । ବିଲେଇ ବଦଳରେ ଗୋଟିଏ ପିଲା ଜାଲରେ ପଡ଼ିଥିବାର ଦେଖି ଭାରି ଆଶ୍ଚର୍ଯ୍ୟ ହେଲା । ସେ ରାଗିଯାଇ ପାଟିକରି କହିଲା–'ଚୋର, ଆଜି ଧରାପଡ଼ିଛୁ ! ତୁ ମୋର କୁକୁଡ଼ା ଚୋରି କରୁଥିଲୁ !'

'ନା ନା, ମୁଁ ଚୋର ନୁହେଁ । ମୁଁ ତ ପେଣ୍ଡାଏ ଅଙ୍ଗୁର ତୋଳିବାକୁ ଆସିଥିଲି ।' ପିନାକିୟୋ କାନ୍ଦ କାନ୍ଦ ହୋଇ କହିଲା ।

'ହଁ ହଁ, ଯେ ଅଙ୍ଗୁର ଚୋରାଇପାରେ, ସେ କୁକୁଡ଼ା ଚୋରି କରିବା କିଛି ଅସମ୍ଭବ ନୁହେଁ । ମୁଁ ତୋତେ ଏପରି ସଜା ଦେବି, ଯାହାକି ତୋର ସବୁଦିନ ପାଇଁ ମନେ ରହିବ ।' ଏହା କହି କୃଷକ ଜାଲରୁ ତାର ଗୋଡ଼ ଛଡ଼ାଇ ଦେଲା ଓ ଘୋଷାରି ଘୋଷାରି ତାକୁ ନିଜ ଘରକୁ ନେଇଗଲା । ଘରକୁ ନେଇ ସେ ତାକୁ ତଳେ ପିଟିଦେଇ କହିଲା–'ଆଜି ବହୁତ ରାତି ହୋଇଗଲାଣି । କାଲି ତୋ ଖବର ବୁଝିବି । କିନ୍ତୁ ଯେଉଁ କୁକୁର ମୋର ଘର ଜଗେ, ଆଜି ତାର କାମ ତୋତେ କରିବାକୁ ପଡ଼ିବ । ବୁଝିଲୁ ତ ?' ଏହା କହି ସେ ପିନାକିୟୋ ବେକରେ ପିତଳର ଗୋଟିଏ ବଡ଼ ଭାରୀ ଜିନିଷ ଲଦି ଦେଲା ଓ ଗୋଟିଏ ଜଞ୍ଜିରରେ ବାନ୍ଧି କାନ୍ଥରେ ବାନ୍ଧିଦେଲା ।

ପୁଣି କହିଲା–'ଯଦି ରାତିରେ ବର୍ଷା ହୁଏ, ତେବେ ଏହି ବାକ୍ସ ଭିତରେ ପଶିଯିବୁ ଯେଉଁଥିରେ କି ମୋର କୁକୁର ଆଜିକୁ ଚାରିବର୍ଷ ହେବ ରହୁଥିଲା । ଯଦି ରାତିରେ କୌଣସି ଚୋର ବା ଡାକୁ ଆସନ୍ତି, ତେବେ ଡାକିବାକୁ ଭୁଲିବୁ ନାହିଁ । ଆଚ୍ଛା, କାଲି ସକାଳେ ପୁଣି ଦେଖାହେବ ।'

ସେଦିନ କୃଷକ କବାଟ ବନ୍ଦକରି ଶୋଇଲା । ବିଚରା ପିନାକିୟୋ ବାହାରେ ଶୀତଦିନ ରାତିରେ ଭୋକ ଶୋଷରେ ପଡ଼ିଥାଏ । ବାରମ୍ବାର ସେ ବେକରୁ ଭାରୀ ପିତଳକୁ ଠେଲୁଥାଏ । କିନ୍ତୁ ତାହା ଏତେ ଶକ୍ତ ହୋଇଥାଏ ଯେ ସେଥିରୁ ଉଦ୍ଧାର ପାଇବା ସମ୍ଭବ ନଥାଏ । କିଛି ସମୟ ପରେ ସେ ଥକିଯାଇ ଶୋଇବା ପାଇଁ କୁକୁରର ବାକ୍ସକୁ ଚାଲିଗଲା । ଅଳ୍ପ ସମୟ ପରେ ତାକୁ ନିଦ ହୋଇଗଲା । ପ୍ରାୟ ଦୁଇଘଣ୍ଟା ସେ ଶୋଇପଡ଼ିଲା ।

ହଠାତ୍ ଅଧରାତିରେ କା'ର ଶବ୍ଦ ଶୁଣି ତାର ନିଦ ଭାଙ୍ଗିଗଲା । ସେ ଧୀରେ ଧୀରେ ବାକ୍ସ ଭିତରୁ ବେକ କାଢ଼ି ଦେଖିଲା, ବାହାର ଅଗଣାରେ କଳା କଳା ଜଙ୍ଗଲି ବିଲେଇଗୁଡ଼ାକ ଠିଆହୋଇ ପରାମର୍ଶ କରୁଥାନ୍ତି । ଏତିକିବେଳେ ଗୋଟିଏ ବିଲେଇ ତା ବାକ୍ସ ପାଖକୁ ଆସି ଧୀରେ ଧୀରେ କହିଲା–'ସଲାମ୍ ଭାଇ ମେଲାମ୍ପୋ !'

'ମୋର ନାମ ମେଲାମ୍ପୋ ନୁହେଁ ।' କାଠକୁଣ୍ଢେଇ ଉତ୍ତର ଦେଲା ।

'ଏଁ, ତୁମେ କିଏ ମହାଶୟ ?'

'ମୁଁ ପିନାକିୟୋ ।'

'ଏଠାରେ ତୁମେ କଅଣ କରୁଛ ? 'ଆଉ ଆମ ମେଲାମ୍ପୋ କୁଆଡ଼େ ଗଲା ? ସେ ଏହି ବାକ୍ସ ଭିତରେ ଥିଲା !'

'ସେ, ଆଜି ସକାଳୁ ମରିଗଲାଣି ।'

'ହାୟ ହାୟ, ମରିଗଲା ? ଭାରି ଭଲ କୁକୁର ଥିଲା ବିଚରା । କିନ୍ତୁ ତୁମ କଥାରୁ ଜଣାପଡୁଛି ଯେ ତୁମେ ମଧ୍ୟ କୌଣସି ଖରାପ କୁକୁର ନୁହଁ ।'

କ୍ଷମା କରିବେ, ଆପଣ କଣ କହୁଛନ୍ତି ! ମୁଁ କୁକୁର ନୁହେଁ ।'

'କୁକୁର ନୁହଁ, ତେବେ ତୁମେ କିଏ ?'

'ମୁଁ ତ ଗୋଟିଏ କାଠକୁଣ୍ଢେଇ ।' ପିନାକିୟୋ ଗର୍ବର ସହିତ କହିଲା ।

'ତେବେ ଭଲ କଥା, ତୁମ ସହିତ ଆମର ଏହି ସଦ୍‌ଭାବ ରହିବ, ଯେପରି ମେଲାମ୍ପୋ ସହିତ ଥିଲା । ତୁମେ ତ ଜାଣ ଆମେ କେତେ ବିଶ୍ୱସ୍ତ । ଆମେ ସଦ୍‌ଭାବ କେବେ ଭଙ୍ଗ କରୁ ନାହିଁ ।'

'କିପରି ସଦ୍‌ଭାବ ?'

'ସପ୍ତାହକ ମଧ୍ୟରେ ଗୋଟିଏ ରାତି ତୁମେ ଆମକୁ ଏହି କୃଷକର ହତାକୁ ଆସିବାକୁ ଦେବ । ଏହି ଆଠଗୋଟି କୁକୁଡ଼ା ମଧ୍ୟରୁ ଆମେ ସାତଟି ଖାଇବୁ ଓ ଗୋଟିଏ ତୁମକୁ ଦେଇଦେବୁ; କିନ୍ତୁ ଏହି ସର୍ତ୍ତ ରହିବ ଯେ, ତୁମେ ଆଖିବୁଜି ଚୁପ୍‌ଚାପ୍ ପଡ଼ିରହିବ ଓ ତୁମ ମାଲିକକୁ ଉଠାଇବ ନାହିଁ ।'

'ମେଲାମ୍ପୋ ନାମକ ଯେଉଁ କୁକୁର ଏଠି ରହୁଥିଲା, ସେ କ'ଣ ଏପରି କରୁଥିଲା ?'

'ଆଉ କଅଣ କି ? ଆମର ତା' ସହିତ ଭଲ ପଟୁଥିଲା । ଆମେ ଗୋଟିଏ ଭଲ କୁକୁଡ଼ା ମାରି ତା ପାଇଁ ଏହି ବାକ୍‌ସରେ ଦେଉଥିଲୁ । ଆଚ୍ଛା କହିଲ, ଆମର ସଦ୍‌ଭାବ ଦୃଢ଼ ନଥିଲା ?

'ହଁ ହଁ, ସମ୍ପୂର୍ଣ୍ଣ ଦୃଢ଼ ।' ପିନାକିୟୋ ମୁଣ୍ଡ ହଲାଇଲା । ସେ ମନେ ମନେ ମୁରୁକି ମୁରୁକି ହସିଲା । ଯେଉଁଠି କୃଷକର କୁକୁଡ଼ାଗୁଡ଼ିକ ଥିଲେ, ସେଠାକୁ ବିଲେଇମାନେ ଚାଲିଗଲେ । କିନ୍ତୁ ସେମାନେ କୃଷକର ହତା ମଧ୍ୟରେ ପଶିବା ମାତ୍ରେ ପିନାକିୟୋ ଚୁପ୍‌ଚାପ୍ ପଛଆଡୁ ଦରଜା ବନ୍ଦ କରିଦେଲା । ତା'ପରେ ସେ କୃଷକର ଶୋଇବାଘର ନିକଟକୁ ଯାଇ କୁକୁରପରି ଭୁକିବାକୁ ଲାଗିଲା । ସଙ୍ଗେ ସଙ୍ଗେ କୃଷକ ବାହାରକୁ ବାହାରି ପଡ଼ିଲା । ସେ ହାତରେ ବନ୍ଧୁକ ଧରି ପଚାରିଲା—'କଥା କଅଣ ?'

'ଡାକୁ ଆସିଛନ୍ତି । ଚାରିଟା ବିଲେଇ କୁକୁଡ଼ା ଧରିବାପାଇଁ ଯାଇଛନ୍ତି ।'—ପିନାକିୟୋ କହିଲା ।

'ଆଚ୍ଛା, ବର୍ତ୍ତମାନ ମୁଁ ତାଙ୍କର ମଜା ଦେଖୁଛି ।' ଏହା କହି କୃଷକ ଗୋଟିଏ ବସ୍ତା ନେଇ କୁକୁଡ଼ା ଥିବା ଘରକୁ ପଶିଗଲା । ଅଳ୍ପ ସମୟ ମଧ୍ୟରେ ସେ ଚାରିଟା ବିଲେଇଙ୍କୁ ବସ୍ତାରେ ପୂରାଇ ବନ୍ଦ କରିଦେଲା ।

ତାପରେ ସେ ପିନାକିୟୋର ପିଠି ଆଉଁଶି ତାକୁ ସମସ୍ତ ଘଟଣା ପଚାରିଲା । ପୁରୁଣା କୁକୁର ବିଲେଇମାନଙ୍କ ସହିତ କିପରି ସଦ୍ଭାବ ରଖିଥିଲା ସେହିସବୁ ଘଟଣା ପିନାକିୟୋ ତାକୁ କହିଦେଲା । କୃଷକ ପାଟିକରି କହିଲା—'ତୁମେ କଅଣ କହୁଛ ! ମୋର କୁକୁର ଏତେ ସ୍ୱାମୀଭକ୍ତ ଥିଲା ଯେ କଅଣ କହିବି । ଏହା କିପରି ହୋଇପାରିବ ଯେ ବିଲେଇମାନେ କୁକୁଡ଼ା ଚୋରି କରୁଥିଲେ । ଆଉ ସେ ଚୁପ୍‌ଚାପ୍ ପଡ଼ିରହୁଥିଲା ?

କିନ୍ତୁ ଖୁସିର କଥା, ତୁମେ ଆଜି ବିଲେଇଗୁଡ଼ାଙ୍କୁ ଧରାଇ ଦେଇଛ । ମୁଁ ତୁମ ପ୍ରତି ଭାରି ଖୁସି ହେଲି । ଯାଅ ତୁମକୁ ଛାଡ଼ିଦେଲି ।'

କୃଷକ ପିନାକିୟୋର ଅପରାଧ କ୍ଷମାକରି ତାକୁ ଛାଡ଼ିଦେଲା ।

ପିନାକିୟୋକୁ କୃଷକ ପାଖରୁ ଯେମିତି ଛୁଟି ମିଳିଛି, ସେମିତି ସେ ଦୌଡ଼ି ଦୌଡ଼ି ରାସ୍ତା ଉପରକୁ ୟାଇ ସିଧା ଜଙ୍ଗଲ ଆଡ଼କୁ ଚାଲିଲା । ଯେତେବେଳେ ସେ ସେହି ଗଛ ନିକଟରେ ପହଞ୍ଚିଲା, ଯେଉଁ ଗଛରେ ତାକୁ ଫାଶୀରେ ଝୁଲାଇ ଦିଆଯାଇଥିଲା, ସେତେବେଳେ ତାର ଦେହ ଥରିଉଠିଲା । ତାକୁ ବର୍ତ୍ତମାନ ସୁଦ୍ଧା ଡର ଲାଗୁଥାଏ ଯେ, ଯେପରି ବୁଦା ପଛରୁ କେହି ଆସି ତାକୁ ଧରିନେଇ ନ ଯାଏ । ସେ ଚାରିଆଡ଼କୁ ଦୃଷ୍ଟି ପକାଇଲା । ପରୀମହଲ କେଜାଣି କେଉଁଠି ଅଦୃଶ୍ୟ ହୋଇଯାଇଥିଲା । ତାକୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଏହା କିପରି ସମ୍ଭବ ହେଲା ? ପରୀର ଘର ମଧ୍ୟ ଅଦୃଶ୍ୟ ହୋଇପାରେ ! କିନ୍ତୁ ସତକଥା । ଯେତେବେଳେ ସେ ସେହି ଖୋଲା ପଡ଼ିଆରେ ପହଞ୍ଚିଲା, ଯେଉଁଠି କି ପରୀମହଲ ତିଆରି ହୋଇଥିଲା, ସେଠି ସେ ଯାହା ଦେଖିଲା, ତାର ଦୁଃଖର ସୀମା ରହିଲା ନାହିଁ । ପରୀମହଲ ପ୍ରକୃତ ଅଦୃଶ୍ୟ ହୋଇଯାଇଥିଲା । କିନ୍ତୁ ଠିକ୍ ସେହି ସ୍ଥାନରେ ଗୋଟିଏ ଚଟାଣ ତିଆରି ହୋଇଥିଲା ଓ ତହିଁରେ ଗୋଟିଏ ଶଙ୍ଖମଲମଲ ପଥର ଲାଗିଥାଏ । ପଥରରେ ଲେଖାଥିଲା–

'ଏଠାରେ ସେହି ନୀଳଆଖି ବାଳିକା ଚିରନିଦ୍ରାରେ ଶୋଇଅଛି । ତାର ଛୋଟ ଭାଇ ପିନାକିୟୋ ତାକୁ ଛାଡ଼ି ଚାଲିଯିବାରୁ ସେହି ଦୁଃଖରେ ସେ କାନ୍ଦି କାନ୍ଦି ମରିଯାଇଛି ।' ପିନାକିୟୋ ଏହାକୁ ପଢ଼ିବା ବେଳେ ତା' ମନରେ କେତେ ଦୁଃଖ ହୋଇଥିବ, ଏକଥା ସହଜରେ ଅନୁମାନ କରାଯାଇପାରେ । ସେ କଚାଡ଼ି ହୋଇ ସେହି ପଥର ଉପରେ ପଡ଼ିଗଲା ଓ କାନ୍ଦି କାନ୍ଦି ତଳେ ଗଡ଼ିବାକୁ ଲାଗିଲା । ସାରାରାତି ସେ କାନ୍ଦୁଥାଏ । ନିଜ ଭଉଣୀର କବର ଉପରେ ସେ ଏତେ ଲୁହ ବୁହାଇଲା ଯେ, ସକାଳକୁ ତା' ଆଖିରୁ ସବୁ ଲୁହ ଶେଷ ହୋଇଯାଇଥାଏ । ବର୍ତ୍ତମାନ ମଧ୍ୟ ସେ ଖୁବ୍ ଜୋର୍‌ରେ କଇଁ କଇଁ ହୋଇ କାନ୍ଦୁଥାଏ ।

ସେହି ଅତି ଆଦରର ଭଉଣୀଟି ବାରମ୍ବାର ତାର ମନେ ପଡ଼ୁଥାଏ । ସେ ଜଙ୍ଗଲର ରାଣୀ ଥିଲା ଓ ପିନାକିୟୋକୁ ଭଲ ପାଉଥିଲା । ତାର ପିତା ଜପେତୋ କେଉଁଠି ଅଛନ୍ତି

ଓ ସେ କଅଣ କରୁଛନ୍ତି ତାହା ମଧ୍ୟ ସେ ଭୁଲିଯାଇଥିଲା । ଏତେବଡ଼ ସଂସାରରେ ସେ ଏକାକୀ ଥିଲା । ଏହା ଭାବି ସେ ପୁଣି କାନ୍ଦିବାକୁ ଲାଗିଲା । କିନ୍ତୁ ତା' ଆଖିରୁ ସବୁ ଲୁହ ସରିଯାଇଥିଲା । ତେଣୁ ସେ ବେଶି କାନ୍ଦି ପାରିଲା ନାହିଁ ।

ଏତିକିବେଳେ ଗୋଟିଏ ବଡ଼ ପାରା ତା' ମୁଣ୍ଡ ଉପରେ ଗୋଲାକାର ଗତିରେ ଉଡ଼ିବାକୁ ଲାଗିଲା । ପାରାଟି ପିନାକିୟୋକୁ ପଚାରିଲା—'କଅଣ ଭାଇ, ତୁମେ ଏଠାରେ କଅଣ କରୁଛ ?'

'ତୁମକୁ କଅଣ ଦେଖାଯାଉ ନାହିଁ, ମୁଁ କାନ୍ଦୁଛି ।' ପିନାକିୟୋ ତାର ଆଖି ପୋଛୁ ପୋଛୁ ଉପରକୁ ଚାହିଁ କହିଲା । ପାରା ଆଉ ଟିକେ ତଳକୁ ଖସିଆସିଲା । ପୁଣି ପଚାରିଲା—'ଆଚ୍ଛା କହ ତ, ତୁମେ ପିନାକିୟୋ ନାମକ କୌଣସି କାଠକୁଣ୍ଢେଇକୁ ଜାଣିଛ କି ?'

'ପିନାକିୟୋ ! ବାଃ, ମୁଁ ତ ପିନାକିୟୋ ।' କାଠକୁଣ୍ଢେଇ ସଙ୍ଗେ ସଙ୍ଗେ ଠିଆହୋଇ କହିଲା ।

ଏହା ଶୁଣି ପାରା ତଳକୁ ଓହ୍ଲାଇ ପଡ଼ିଲା । ପାରାଟି ଭାରି ବଡ଼ । ସେ ଆଖି ନଚାଇ କହିଲା—'ଆଚ୍ଛା, ତୁମେ ଜପେତୋକୁ ଜାଣ ?'

'ଏ କି ଅଦ୍ଭୁତ ପ୍ରଶ୍ନ । ସେ ତ ମୋର ବାପା ! କୁହ ତୁମେ ଏସବୁ କଥା କିପରି ଜାଣିଲ ? ବାପା କଅଣ ତୁମକୁ ଏଠାକୁ ପଠାଇଅଛନ୍ତି ? କହିଲ, ବର୍ତ୍ତମାନ ସେ କେଉଁଠି ଅଛନ୍ତି ? ଶୀଘ୍ର କହ !'

'ତିନିଦିନ ପୂର୍ବେ ମୁଁ ତାଙ୍କୁ ସମୁଦ୍ର କୂଳରେ ଦେଖିଥିଲି ।'

'ସେଠାରେ ସେ କଅଣ କରୁଥିଲେ ?'

'ସେଠାରେ ସେ ସମୁଦ୍ର ପାରିହେବାପାଇଁ ଗୋଟିଏ ଛୋଟ ନୌକା ତିଆରି କରୁଥିଲେ । କାରଣ ତିନିମାସ ହେବ ତୁମେ ଘରୁ ଚାଲିଯାଇଛ । ତୁମକୁ ସେ ଦୁନିଆସାରା ଖୋଜିଲେ । ଯେତେବେଳେ ତୁମର କୌଣସି ସନ୍ଧାନ ନ ପାଇଲେ, ସେ ସ୍ଥିର କଲେ ଯେ ଅନ୍ୟ ଦେଶରେ ଯାଇ ତୁମକୁ ଖୋଜିବେ ।'

'ସମୁଦ୍ରକୂଳ ଏଠାରୁ କେତେ ଦୂର ?' ପିନାକିୟୋ ପଚାରିଲା ।

'ଛଶହ ମାଇଲରୁ କିଛି ଅଧିକ । ତୁମେ ଇଚ୍ଛା କଲେ ମୁଁ ତୁମକୁ ସେଠାରେ ପହଞ୍ଚାଇ ଦେଇପାରେ । ଆସ ମୋ ଡେଣା ଉପରେ ବସିପଡ଼ ।'

'ହଁ, ଚାଲ, ମୋ ପ୍ରତି ନିଶ୍ଚୟ ଏତିକି ଦୟା କର ।'

ପିନାକିୟୋ ପାରା ପିଠିରେ ବସିପଡ଼ିଲା । ପାରା ତାକୁ ନେଇ ଉଡ଼ି ଉଡ଼ି ଚାଲିଲା । ସାରାଦିନ ଉଡ଼ିବା ପରେ ସନ୍ଧ୍ୟାବେଳକୁ କହିଲା–'ମୋତେ ଶୋଷ ହେଲାଣି ।'

'ମୋତେ ମଧ ଖୁବ୍ ଭୋକ ହେଲାଣି ।' ପିନାକିୟୋ କହିଲା ।

ଦୁହେଁ ଗୋଟିଏ ସ୍ଥାନରେ ଓହ୍ଲାଇପଡ଼ିଲେ । ସେଠାରେ ଗୋଟିଏ ତସଲାରେ ପାଣି ଭର୍ତ୍ତିହୋଇ ରହିଥିଲା ଓ ଅନ୍ୟ ଗୋଟିଏ ତସଲାରେ ପାରାମାନଙ୍କ ପାଇଁ କିଛି ଦାନା ରଖାଯାଇଥିଲା । ପିନାକିୟୋକୁ ଏତେ ଭୋକ ହେଉଥିଲା ଯେ ସେ ସେହି ଦାନାଗୁଡ଼ାକ ଖାଇବାକୁ ଲାଗିଲା । ଅଧିକ ଭୋକ ହେତୁ ଦାନା ମଧ ତାକୁ ଭଲ ଲାଗିଲା । ଖାଇପିଇ ଦୁହେଁ ପୁଣି ଉଡ଼ି ଚାଲିଲେ । ସକାଳ ହେଉ ହେଉ ସମୁଦ୍ର କୂଳରେ ପହଞ୍ଚିଲେ । ସେତେବେଳେ କୂଳରେ ଅନେକ ଲୋକ ଜମା ହୋଇଥାନ୍ତି । ସମସ୍ତେ ପାଟି କରୁଥାନ୍ତି ଓ ସମୁଦ୍ର ଭିତରକୁ ଚାହିଁଥାନ୍ତି । ପିନାକିୟୋ ଗୋଟିଏ ବୁଢ଼ୀକୁ ପଚାରିଲା–'ଏଠାରେ କଅଣ ହେଉଛି ?'

ବୁଢ଼ୀ କହିଲା–'ଜଣେ ଲୋକ ତାର ପୁଅକୁ ଖୋଜିବାପାଇଁ ଗୋଟିଏ ଛୋଟ ନୌକାରେ ବସି ବିଦେଶକୁ ଯାତ୍ରା କଲା । ତାର ପୁଅ ତାକୁ ଛାଡ଼ି କୁଆଡ଼େ ଚାଲିଯାଇଛି । ଆଜି ପାଗ ବହୁତ ଖରାପ । ସମୁଦ୍ରରେ ଭାରି ତୋଫାନ ହେଉଛି । ତେଣୁ ତାର ନୌକା ବିପଦରେ ପଡ଼ିଛି ।'

'କାହିଁ ସେ ନୌକା ?' ପିନାକିୟୋ ଅଧୈର୍ଯ୍ୟ ହୋଇ ପଚାରିଲା । ବୁଢ଼ୀ ଆଙ୍ଗୁଠି ଇସାରା କରି ଦେଖାଇଲା । ପିନାକିୟୋ ସମୁଦ୍ର ଭିତରକୁ ଚାହିଁ ଦେଖିଲା ଯେ ସତରେ ଗୋଟିଏ ଛୋଟ ନୌକା ଲହଡ଼ାରେ ଧକ୍କା ଖାଉଛି । ସେଥିରେ ଜଣେ ଲୋକ ବସିଛି । ପିନାକିୟୋ ସଙ୍ଗେ ସଙ୍ଗେ ତାକୁ ଚିହ୍ନିଲା । ସେ ପାଟି କରି କହିଲା– 'ଏ ତ ମୋ ବାପା । ବାପା ! ବାପା !!'

ନୌକା କେତେବେଳେ ଦେଖାଯାଏ ତ ପୁଣି କେତେବେଳେ ଲହଡ଼ା ଭିତରେ ଛପିଯାଏ । ପିନାକିୟୋ ଗୋଟିଏ ଉଚ୍ଚା ଚଟାଣ ଉପରକୁ ଚଢ଼ିଗଲା ଓ ତାର ବାପାକୁ

ଡାକ ପକାଇଲା । ସେ ବାରମ୍ବାର ନିଜର ଟୋପି ଓ ରୁମାଲ ହଲାଇ ବାପାଙ୍କ ଦୃଷ୍ଟି ନିଜ ଆଡ଼କୁ ଆକୃଷ୍ଟ କରିବାପାଇଁ ଚେଷ୍ଟା କଲା । ନୌକା ବହୁତ ଦୂର ଚାଲିଯାଇଥାଏ, ତଥାପି ଜପେଟୋ ନିଜର ପୁଅକୁ ଚିହ୍ନିଲା । ସେ ବହୁ ଚେଷ୍ଟା କରି ନୌକାକୁ କୂଳ ଆଡ଼କୁ ଫେରାଇଲା କିନ୍ତୁ ହଠାତ୍ ଗୋଟାଏ ବଡ଼ ଲହଡ଼ା ଆସି ନୌକାଟିକୁ କେଉଁଆଡ଼େ ଅଦୃଶ୍ୟ କରିଦେଲା । ଲୋକେ ବହୁତ ସମୟ ପର୍ଯ୍ୟନ୍ତ ଅପେକ୍ଷା କଲେ, କିନ୍ତୁ ନୌକା ଆଉ ଦେଖାଗଲା ନାହିଁ । କୂଳରେ ଠିଆ ହୋଇଥିବା କେଉଟମାନେ କହିବା ଶୁଣାଗଲା– 'ଭଗବାନ ବିଚରାର ଆତ୍ମାକୁ ଶାନ୍ତି ଦିଅନ୍ତୁ ।'

ପିନାକିୟୋ ଖୁବ୍ ପାଟିକରି କହିଲା–'ମୁଁ ମୋ ବାପାଙ୍କୁ ରକ୍ଷା କରିବି ।' ସେ ଚଟାଣ ଉପରୁ ତଳକୁ ଓହ୍ଲାଇଆସିଲା ଓ ସମୁଦ୍ରକୁ ଡେଇଁପଡ଼ିଲା । ସେ ତ କାଠରେ ତିଆରି, ତେଣୁ ବୁଡ଼ି ପାରିଲା ନାହିଁ । ସେ ମାଛ ପରି ପହଁରି ପହଁରି ଆଗକୁ ଚାଲିଲା । କେତେବେଳେ ସେ ଲହଡ଼ାରେ ଲୁଚି ଯାଉଥାଏ, ପୁଣି କେତେବେଳେ ତାର ମୁଣ୍ଡ ଦେଖାଯାଉଥାଏ । ଅଳ୍ପ ସମୟ ପରେ ସେ ଏତେଦୂରକୁ ଚାଲିଗଲା ଯେ କୂଳରେ ଥିବା ଲୋକମାନଙ୍କ ଆଖିରୁ ଅଦୃଶ୍ୟ ହୋଇଗଲା । କେଉଟମାନେ କହିଲେ–'ହାୟ ! ହାୟ ! ବିଚରା ।' ପୁଣି ସେମାନେ ଭଗବାନଙ୍କର ନାମ ନେଇ ଘରକୁ ଫେରିଗଲେ ।

ପିନାକିୟୋ କୌଣସିଠାରେ ଅଟକିଲା ନାହିଁ । ସେ ଅନବରତ ପହଁରୁଥାଏ । ଏପରିକି ସେ ସାରା ରାତି ପହଁରି ପହଁରି କଟାଇଦେଲା । ସେ ଭାବିଲା ଯେ ମୁଁ ନିଶ୍ଚୟ ବାପାଙ୍କୁ ରକ୍ଷା କରିବି । ବଡ଼ ଭୟଙ୍କର ରାତି । ଘୋର ବର୍ଷା ହେଉଥାଏ । ମଝିରେ ମଝିରେ ବିଜୁଳି ମାରୁଥାଏ । ସମୟେ ସମୟେ ବରଫ ମଧ୍ୟ ପଡୁଥାଏ ! ସକାଳ ହେଉ ହେଉ ପିନାକିୟୋ ଦେଖିଲା ଯେ ସେଠାରୁ କିଛି ଦୂରରେ ଭୂମି ଦେଖାଯାଉଛି । ତାହା ସମୁଦ୍ର ଭିତରେ ଥିବା ଗୋଟିଏ ଟାପୁର କୂଳ ।

ସେ କୂଳକୁ ପହଞ୍ଚିବା ପାଇଁ ଖୁବ୍ ଚେଷ୍ଟା କଲା । କିନ୍ତୁ ଲହଡ଼ା ଧକ୍‌କାରେ ସେ ବାରମ୍ବାର ଭାସିଯାଉଥାଏ । ଶେଷରେ ଗୋଟିଏ ବଡ଼ ଲହଡ଼ା ଆସି ତାକୁ କୂଳକୁ ଟାଣିନେଲା । ମୁହୂର୍ତ୍ତକ ମଧ୍ୟରେ ସେ ଯାଇ ବାଲିରେ ପଡ଼ିଲା ।

ବର୍ତ୍ତମାନ ଝଡ଼ ବନ୍ଦ ହୋଇଯାଇଥାଏ । ସମୁଦ୍ର ଲହଡ଼ି ଶାନ୍ତ ହୋଇଆସିଥାଏ । ପିନାକିୟୋ ଖରାରେ ତାର ଲୁଗାପଟା ଶୁଖାଇଦେଲା । ସେ ବାରମ୍ବାର ସମୁଦ୍ର ଆଡ଼େ

ଚାହୁଁଥାଏ । ଯେତେଦୂର ପର୍ଯ୍ୟନ୍ତ ଆଖି ପାଇଲା, ତାକୁ କୌଣସି ନୌକା ଦେଖାଗଲା ନାହିଁ । ସେ ସ୍ଥିର କରିପାରୁ ନଥାଏ ଯେ ସେ କେଉଁ ଟାପୁରେ ପଡ଼ିଛି । ଏଠାରେ ଭଲ ଲୋକ ରହନ୍ତି କି ଜଙ୍ଗଲି ଲୋକ ରହନ୍ତି ଏହା ମଧ୍ୟ ତାକୁ ଜଣାପଡୁ ନଥାଏ । ପଚାରି ବୁଝିବାପାଇଁ ଆଖପାଖରେ ମଧ୍ୟ କୌଣସି ଲୋକ ଦେଖାଯାଉ ନାହାନ୍ତି ।

ବହୁ ସମୟ ଏକାକୀ ବସି ରହିବା ପରେ ତାକୁ ଭାରି କ୍ଳାନ୍ତ ବୋଧ ହେଲା । ଏତିକିବେଳେ ସେ ଦେଖିଲା ଯେ ଗୋଟିଏ ବଡ଼ ମାଛ ପାଣିରୁ ମୁହଁ ବାହାର କରି କୂଳଆଡ଼େ ପହଁରି ପହଁରି ଆସୁଛି । ପିନାକିୟୋ ତାକୁ ପଚାରିଲା–

'ହେ, ହେ ମାଛ ! ଗୋଟିଏ କଥା ପଚାରିବି କହିବ ?'

ମାଛଟି ଦେଖିବାକୁ ଯେତେ ଭୟଙ୍କର ସେତେ ସରଳ ମଧ୍ୟ । ସେ କହିଲା– 'ହଉ ହଉ, ଗୋଟିଏ କାହିଁକି ଦୁଇଟି ପଚାର !'

'ତୁମେ ଦୟାକରି କହିବ କି, ଏହି ଟାପୁରେ ଏପରି କୌଣସି ଗ୍ରାମ ଅଛି ଯେଉଁଠି କି ଜୀବନ ବିପନ୍ନ ନ ହୋଇ ଖାଦ୍ୟ ମିଳିପାରିବ ?

ମାଛ କହିଲା–'ହଁ ହଁ, ଏଠାରୁ ତୁମ ନାକ ସିଧା ଚାଲିଯାଅ । ତୁମେ ଗୋଟିଏ ଗ୍ରାମ ପାଇବ ।'

'ଆଚ୍ଛା, ଆଉ ଗୋଟିଏ କଥା କହିବ କି ? ତୁମେ ତ ଦିନରାତି ସମୁଦ୍ର ଭିତରେ ବୁଲ, କେଉଁଠି ଗୋଟିଏ ଛୋଟ ନୌକାରେ ବସିଥିବା ମୋ ବାପାଙ୍କୁ ଦେଖିଛ କି ?'

'ତୁମ ବାପା କିପରି ଲୋକ ?'

'ମୋ ବାପା ଦୁନିଆରେ ସବୁଠାରୁ ଭଲ ଓ ମୁଁ ଦୁନିଆରେ ସବୁଠାରୁ ଖରାପ ପିଲା ।'

ମାଛ କହିଲା–'ବୋଧହୁଏ ତୋଫାନ ବେଳେ ତୁମ ବାପାଙ୍କର ନୌକା ବୁଡ଼ିଯାଇଛି କିମ୍ବା କୌଣସି ମାଛ ଗିଳିଦେଇଛି । ଏଠାରେ ବହୁତ ବଡ଼ ବଡ଼ ମାଛ ଅଛନ୍ତି । ସେମାନଙ୍କ ଭିତରୁ ଗୋଟିଏ ହେଉଛି 'କୁପ ମାଛ' । ଏ ମାଛଟା ଏତେ ବଡ଼ ଯେ ଦେଖିବାକୁ ଯେପରି ଗୋଟିଏ ପାଞ୍ଚମହଲା ଘର । ଏହାର ମୁହଁ ପୂରା ରେଳଗାଡ଼ି ଇଞ୍ଜିନ ଓ ଡବା ସହିତ ସମାନ ।'

'ହେ ଭଗବାନ !' ପିନାକିୟୋ ବ୍ୟସ୍ତହୋଇ ଶୀଘ୍ର ଶୀଘ୍ର ଲୁଗା ପିନ୍ଧୁ ପିନ୍ଧୁ କହିଲା–'ଆଚ୍ଛା, ଧନ୍ୟବାଦ ! ତୁମେ ମୋତେ ଖୁବ୍ ସାହାଯ୍ୟ କରିଛ ।' ଏହା କହି ସେ ସିଧା ଆଗକୁ ଚାଲିଲା ।

ଦୌଡ଼ି ଦୌଡ଼ି ସେ ଏକ ଛୋଟ ଗ୍ରାମରେ ପହଞ୍ଚିଲା । ଗ୍ରାମଟିର ନାମ 'ପରିଶ୍ରମୀ ମାଛିମାନଙ୍କର ଗ୍ରାମ ।' ଏହି ଗ୍ରାମରେ ସମସ୍ତେ ନିଜ ନିଜ କାମରେ ଲାଗିଥାନ୍ତି । କିଏ କାମ କରିବାକୁ ଗୋଟିଏ ଦିଗକୁ ଗଲେ ଅନ୍ୟମାନେ ଅପର ଦିଗକୁ ଯାଆନ୍ତି । କାହାରିକୁ ନିଶ୍ୱାସ ମାରିବାପାଇଁ ଫୁରୁସତ ନଥାଏ ।

ପିନାକିୟୋକୁ ତା ପରି ଅଳସୁଆ ଲୋକ ମିଳିଲେ ନାହିଁ । ତାକୁ ଭାରି ଭୋକ ହେଉଥାଏ । କିନ୍ତୁ ଉପାୟ କଅଣ । ଏ ଅଜଣା ସହରରେ ସେ କାହାକୁ ବା ଖାଇବାକୁ ମାଗିବ । ଏଠାରେ ଖାଦ୍ୟ ମିଳିବାର ଦୁଇଟି ରାସ୍ତା ଅଛି । ତା ହେଉଛି–ଭିକ ମାଗିବା ଓ କାମ ମାଗିବା । ଭିକ ମାଗିବା ପିନାକିୟୋକୁ ଭାରି ଖରାପ ଲାଗିଲା । ଏଣୁ ସେ କାମ କରିବାପାଇଁ ସ୍ଥିର କଲା । ଏହି ସମୟରେ ଗୋଟିଏ ଲୋକ ଆସିଲା । ଲୋକଟି ଧଇଁସଇଁ ହେଉଥାଏ । ସେ ଏକାକୀ ଦୁଇଟି ଗାଡ଼ିରେ କାଠ କୋଇଲା ଲଦି ଗାଡ଼ି ଦୁଇଟି ଟାଣୁଥାଏ । ପିନାକିୟୋ ତାକୁ କୌଣସି ଦୟାଳୁ ବ୍ୟକ୍ତି ବୋଲି ମନେକଲା । ଭାବିଲା–ଯାଏଁ, ଏହାକୁ ଦୁଇପଇସା ମାଗେ । ସେ ତା ନିକଟକୁ ଯାଇ ତାକୁ ପଇସା ମାଗିଲା । ଲୋକଟି କହିଲା–'ଦୁଇ ପଇସା କଅଣ, ମୁଁ ତୁମକୁ ଦୁଇଅଣା ଦେଇପାରେ । କିନ୍ତୁ ମୋତେ ଟିକିଏ ଗାଡ଼ି ଟାଣିବାରେ ସାହାଯ୍ୟ କର ।'

ପିନାକିୟୋ ରାଗିଯାଇ କହିଲା–'ବଡ଼ ଆଶ୍ଚର୍ଯ୍ୟ କଥା ! ସଫା କଥା କହୁଛି ଶୁଣ । ମୁଁ ଗଧ କାମ କରିବାପାଇଁ ପ୍ରସ୍ତୁତ ନୁହେଁ । ମୁଁ କେବେହେଲେ ଗାଡ଼ି ଟାଣିବା କାମ କରି ନାହିଁ ।'

ଲୋକଟି ପଛକୁ ଘୂରି ତା ଆଡ଼କୁ ଚାହିଁଦେଇ ଚାଲିଗଲା । ଏହିପରି ଅଧଘଣ୍ଟା ମଧ୍ୟରେ ପ୍ରାୟ ୨୦ ଜଣଙ୍କୁ ପିନାକିୟୋ ପଇସା ମାଗିଲା । କିନ୍ତୁ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା–

'ତୁମକୁ ଭିକ ମାଗିବାକୁ ଲାଜ ଲାଗୁନାହିଁ ? ଯାଅ, କୌଣସି କାମ କର ।'

ଚାହୁଁଥାଏ । ଯେତେଦୂର ପର୍ଯ୍ୟନ୍ତ ଆଖି ପାଇଲା, ତାକୁ କୌଣସି ନୌକା ଦେଖାଗଲା ନାହିଁ । ସେ ସ୍ଥିର କରିପାରୁ ନଥାଏ ଯେ ସେ କେଉଁ ଟାପୁରେ ପଡ଼ିଛି । ଏଠାରେ ଭଲ ଲୋକ ରହନ୍ତି କି ଜଙ୍ଗଲି ଲୋକ ରହନ୍ତି ଏହା ମଧ୍ୟ ତାକୁ ଜଣାପଡୁ ନଥାଏ । ପଚାରି ବୁଝିବାପାଇଁ ଆଖପାଖରେ ମଧ୍ୟ କୌଣସି ଲୋକ ଦେଖାଯାଉ ନାହାନ୍ତି ।

ବହୁ ସମୟ ଏକାକୀ ବସି ରହିବା ପରେ ତାକୁ ଭାରି କ୍ଳାନ୍ତ ବୋଧ ହେଲା । ଏତିକିବେଳେ ସେ ଦେଖିଲା ଯେ ଗୋଟିଏ ବଡ଼ ମାଛ ପାଣିରୁ ମୁହଁ ବାହାର କରି କୂଳଆଡ଼େ ପହଁରି ପହଁରି ଆସୁଛି । ପିନାକିୟୋ ତାକୁ ପଚାରିଲା–

'ହେ, ହେ ମାଛ ! ଗୋଟିଏ କଥା ପଚାରିବି କହିବ ?'

ମାଛଟି ଦେଖିବାକୁ ଯେତେ ଭୟଙ୍କର ସେତେ ସରଳ ମଧ୍ୟ । ସେ କହିଲା– 'ହଉ ହଉ, ଗୋଟିଏ କାହିଁକି ଦୁଇଟି ପଚାର ।'

'ତୁମେ ଦୟାକରି କହିବ କି, ଏହି ଟାପୁରେ ଏପରି କୌଣସି ଗ୍ରାମ ଅଛି ଯେଉଁଠି କି ଜୀବନ ବିପନ୍ନ ନ ହୋଇ ଖାଦ୍ୟ ମିଳିପାରିବ ?

ମାଛ କହିଲା–'ହଁ ହଁ, ଏଠାରୁ ତୁମ ନାକ ସିଧା ଚାଲିଯାଅ । ତୁମେ ଗୋଟିଏ ଗ୍ରାମ ପାଇବ ।'

'ଆଚ୍ଛା, ଆଉ ଗୋଟିଏ କଥା କହିବ କି ? ତୁମେ ତ ଦିନରାତି ସମୁଦ୍ର ଭିତରେ ବୁଲ, କେଉଁଠି ଗୋଟିଏ ଛୋଟ ନୌକାରେ ବସିଥିବା ମୋ ବାପାଙ୍କୁ ଦେଖିଛ କି ?'

'ତୁମ ବାପା କିପରି ଲୋକ ?'

'ମୋ ବାପା ଦୁନିଆରେ ସବୁଠାରୁ ଭଲ ଓ ମୁଁ ଦୁନିଆରେ ସବୁଠାରୁ ଖରାପ ପିଲା ।'

ମାଛ କହିଲା–'ବୋଧହୁଏ ତୋଫାନ ବେଳେ ତୁମ ବାପାଙ୍କର ନୌକା ବୁଡ଼ିଯାଇଛି କିମ୍ବା କୌଣସି ମାଛ ଗିଳିଦେଇଛି । ଏଠାରେ ବହୁତ ବଡ଼ ବଡ଼ ମାଛ ଅଛନ୍ତି । ସେମାନଙ୍କ ଭିତରୁ ଗୋଟିଏ ହେଉଛି 'କୁପ ମାଛ' । ଏ ମାଛଟା ଏତେ ବଡ଼ ଯେ ଦେଖିବାକୁ ଯେପରି ଗୋଟିଏ ପାଞ୍ଚମହଲା ଘର । ଏହାର ମୁହଁ ପୂରା ରେଳଗାଡ଼ି ଇଞ୍ଜିନ ଓ ଡବା ସହିତ ସମାନ ।'

'ହେ ଭଗବାନ !' ପିନାକିୟୋ ବ୍ୟସ୍ତହୋଇ ଶୀଘ୍ର ଶୀଘ୍ର ଲୁଗା ପିନ୍ଧୁ ପିନ୍ଧୁ କହିଲା–'ଆଚ୍ଛା, ଧନ୍ୟବାଦ ! ତୁମେ ମୋତେ ଖୁବ୍ ସାହାଯ୍ୟ କରିଛ ।' ଏହା କହି ସେ ସିଧା ଆଗକୁ ଚାଲିଲା ।

ଦୌଡ଼ି ଦୌଡ଼ି ସେ ଏକ ଛୋଟ ଗ୍ରାମରେ ପହଞ୍ଚିଲା । ଗ୍ରାମଟିର ନାମ 'ପରିଶ୍ରମୀ ମାଛିମାନଙ୍କର ଗ୍ରାମ ।' ଏହି ଗ୍ରାମରେ ସମସ୍ତେ ନିଜ ନିଜ କାମରେ ଲାଗିଥାନ୍ତି । କିଏ କାମ କରିବାକୁ ଗୋଟିଏ ଦିଗକୁ ଗଲେ ଅନ୍ୟମାନେ ଅପର ଦିଗକୁ ଯାଆନ୍ତି । କାହାରିକୁ ନିଶ୍ୱାସ ମାରିବାପାଇଁ ଫୁରୁସତ ନଥାଏ ।

ପିନାକିୟୋକୁ ତା ପରି ଅଳସୁଆ ଲୋକ ମିଳିଲେ ନାହିଁ । ତାକୁ ଭାରି ଭୋକ ହେଉଥାଏ । କିନ୍ତୁ ଉପାୟ କଅଣ । ଏ ଅଜଣା ସହରରେ ସେ କାହାକୁ ବା ଖାଇବାକୁ ମାଗିବ । ଏଠାରେ ଖାଦ୍ୟ ମିଳିବାର ଦୁଇଟି ରାସ୍ତା ଅଛି । ତା ହେଉଛି–ଭିକ ମାଗିବା ଓ କାମ ମାଗିବା । ଭିକ ମାଗିବା ପିନାକିୟୋକୁ ଭାରି ଖରାପ ଲାଗିଲା । ଏଣୁ ସେ କାମ କରିବାପାଇଁ ସ୍ଥିର କଲା । ଏହି ସମୟରେ ଗୋଟିଏ ଲୋକ ଆସିଲା । ଲୋକଟି ଧଇଁସଇଁ ହେଉଥାଏ । ସେ ଏକାକୀ ଦୁଇଟି ଗାଡ଼ିରେ କାଠ କୋଇଲା ଲଦି ଗାଡ଼ି ଦୁଇଟି ଟାଣୁଥାଏ । ପିନାକିୟୋ ତାକୁ କୌଣସି ଦୟାଳୁ ବ୍ୟକ୍ତି ବୋଲି ମନେକଲା । ଭାବିଲା–ଯାଏଁ, ଏହାକୁ ଦୁଇପଇସା ମାଗେ । ସେ ତା ନିକଟକୁ ଯାଇ ତାକୁ ପଇସା ମାଗିଲା । ଲୋକଟି କହିଲା–'ଦୁଇ ପଇସା କଅଣ, ମୁଁ ତୁମକୁ ଦୁଇଅଣା ଦେଇପାରେ । କିନ୍ତୁ ମୋତେ ଟିକିଏ ଗାଡ଼ି ଟାଣିବାରେ ସାହାଯ୍ୟ କର ।'

ପିନାକିୟୋ ରାଗିଯାଇ କହିଲା–'ବଡ଼ ଆଶ୍ଚର୍ଯ୍ୟ କଥା ! ସଫା କଥା କହୁଛି ଶୁଣ । ମୁଁ ଗଧ କାମ କରିବାପାଇଁ ପ୍ରସ୍ତୁତ ନୁହେଁ । ମୁଁ କେବେହେଲେ ଗାଡ଼ି ଟାଣିବା କାମ କରି ନାହିଁ ।'

ଲୋକଟି ପଛକୁ ଘୂରି ତା ଆଡ଼କୁ ଚାହିଁଦେଇ ଚାଲିଗଲା । ଏହିପରି ଅଧଘଣ୍ଟା ମଧ୍ୟରେ ପ୍ରାୟ ୨୦ ଜଣଙ୍କୁ ପିନାକିୟୋ ପଇସା ମାଗିଲା । କିନ୍ତୁ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା–

'ତୁମକୁ ଭିକ ମାଗିବାକୁ ଲାଜ ଲାଗୁନାହିଁ ? ଯାଅ, କୌଣସି କାମ କର ।'

ଶେଷରେ ଜଣେ ସ୍ତ୍ରୀଲୋକ ଆସୁଥିବାର ଦେଖିଲା । ସ୍ତ୍ରୀ ଲୋକଟି ଦୁଇ ବାଲଟି ପାଣି ଆଣୁଥିଲା । ପିନାକିୟୋ ତାକୁ ପାଣି ମାଗିଲା । ସ୍ତ୍ରୀଲୋକଟିର ସ୍ୱଭାବ ଭଲ ଥିଲା । ସେ ତାକୁ ପାଣି ପିଆଇଲା । ପାଣି ପିଇସାରି ପିନାକିୟୋ କହିଲା—'ମୋର ଶୋଷ ତ ଦୂର ହୋଇଗଲା, ଏହିପରି ଯଦି ମୋର ଭୋକ ଦୂର ହୋଇଯାଆନ୍ତା...'

ସ୍ତ୍ରୀଲୋକଟି ହସି ହସି କହିଲା—'ତୁମେ ମୋର ଗୋଟିଏ ବାଲିଟି ଯଦି ଘରେ ପହଞ୍ଚାଇଦେବ, ମୁଁ ତୁମକୁ ପେଟଭର୍ତ୍ତି ଖାଇବାକୁ ଦେବି ।'

ପିନାକିୟୋକୁ ଏହା ଭଲ ଲାଗିଲା ନାହିଁ । କିନ୍ତୁ ଏହା ବ୍ୟତୀତ ଅନ୍ୟ କୌଣସି ରାସ୍ତା ମଧ୍ୟ ନଥିଲା । ସେ ବାଲଟି ଉଠାଇଲା । ବାଲଟି ଖୁବ୍ ଭାରୀ ହୋଇଥାଏ । ତେଣୁ ତାକୁ ମୁଣ୍ଡ ଉପରେ ଥୋଇ ସେ ସ୍ତ୍ରୀଲୋକଟି ସହିତ ଚାଲିଲା ।

ଘରେ ପହଞ୍ଚି ସ୍ତ୍ରୀଲୋକଟି ତା ଆଗରେ ଖାଦ୍ୟ ପରଷିଦେଲା । ପିନାକିୟୋ ଖାଇବାପାଇଁ ବସିଗଲା । ସେ ଖାଇବାରେ ଏତେ ବ୍ୟସ୍ତ ରହିଲା ଯେ, ତାର ସ୍ତ୍ରୀଲୋକଟି ଆଡ଼େ ଆଦୌ ଧ୍ୟାନ ନ ଥାଏ । ପେଟଭର୍ତ୍ତି ଖାଇସାରି ସ୍ତ୍ରୀଲୋକଟି ଆଡ଼କୁ ତନ୍ମୟଭାବେ ଚାହିଁ ରହିଲା । ପିନାକିୟୋ ତାକୁ ଚିହ୍ନିବାକୁ ଚେଷ୍ଟା କରୁଥାଏ । ହଠାତ୍ ଉଠିପଡ଼ି ତା ଗୋଡ଼ତଳେ ପଡ଼ିଯାଇ କାନ୍ଦି କାନ୍ଦି କହିଲା, 'ତୁମେ ମିଳିଛ, ତୁମେ ମୋର ସେହି ପରୀ ଭଉଣୀ । ତୁମେ କଅଣ ମୋତେ ଚିହ୍ନିପାରୁ ନାହଁ ? ମୁଁ ତୁମପାଇଁ କେତେ କାନ୍ଦୁଛି !'

ପ୍ରଥମେ ତ ସ୍ତ୍ରୀଲୋକଟି ଚୁପ୍‌ହୋଇ ରହିଲା । କିନ୍ତୁ ପରେ ତା ଆଖିରୁ ଲୁହ ଗଡ଼ିପଡ଼ିଲା । ସେ ଥିଲା ସେହି ଜଙ୍ଗଲର ପରୀ । ବର୍ତ୍ତମାନ ସେ ବଡ଼ ହୋଇଯାଇଥାଏ ଓ ପିନାକିୟୋର ମା ପରି ଦେଖାଯାଉଥାଏ । ସେ ଆଦର କରି ପିନାକିୟୋ ମୁଣ୍ଡରେ ହାତ ବୁଲାଇଲା । ପିନାକିୟୋ ତାକୁ ପଚାରିଲା—'ଭଉଣୀ, ତୁମେ ଏଡ଼େ ବଡ଼ କିପରି ହୋଇଗଲ ? ମୁଁ ତ ଆଜି ପର୍ଯ୍ୟନ୍ତ ସୂତାଏ ହେଲେ ବଢ଼ିନାହିଁ !'

'ତୁମେ ବଢ଼ିବ କିପରି ? କାଠକୁଣ୍ଢେଇ ବଢ଼େ ନାହିଁ । ତୁମେ ଏହିପରି ରହିବ ।'

'ନା ନା, ମୁଁ କାଠକୁଣ୍ଢେଇ ହୋଇ ରହିବାକୁ ଚାହେଁନା । ଏ ଜନ୍ମରେ ମୁଁ ବହୁ କଷ୍ଟ ସହ୍ୟ କଲିଣି । ବର୍ତ୍ତମାନ ମୁଁ ମନୁଷ୍ୟ ହେବାକୁ ଚାହେଁ ।' ପିନାକିୟୋ କାନ୍ଦି କାନ୍ଦି କହିଲା ।

'ହଁ, ତୁମେ ମନୁଷ୍ୟ ହୋଇପାର, କିନ୍ତୁ ମନୁଷ୍ୟ ଭଳି ମନୁଷ୍ୟ ହୋଇପାରିବ ନାହିଁ । କାରଣ ଭଲ ମନୁଷ୍ୟ ହେବାପାଇଁ ଭଲ ପିଲା ହେବା ଉଚିତ । ଗୁରୁଜନମାନଙ୍କ କଥା ମାନିବାକୁ ହେବ । ସତ କହିବାକୁ ପଡ଼ିବ । ପଢ଼ିବାରେ ଓ ଅନ୍ୟାନ୍ୟ କାମରେ ମନଦେବା ଉଚିତ ।'

'କିନ୍ତୁ ଭଉଣୀ, ପଢ଼ିବାରେ ମୋର ମନ ଲାଗୁନାହିଁ । ଦେହସାରା ଦରଜ ହେଉଛି । ଆଚ୍ଛା ହେଉ, ତୁମେ କହୁଛ ତ ମୁଁ ପ୍ରତିଜ୍ଞା କରୁଛି ଯେ ମୁଁ ଭଲପିଲା ହେବି ଓ ସ୍କୁଲକୁ ପଢ଼ିବାକୁ ଯିବି । ମୁଁ ଅତି ଶୀଘ୍ର ଏ କାଠକୁଣ୍ଢେଇ ଜୀବନ ବଦଳାଇ ଗୋଟିଏ ବାଳକ ହେବାକୁ ଚାହୁଁଛି ।'

ପରଦିନ ପିନାକିୟୋ ସରକାରୀ ସ୍କୁଲକୁ ପଢ଼ିବାପାଇଁ ଗଲା ।

ସ୍କୁଲର ପିଲାମାନେ ଯେତେବେଳେ ଦେଖିଲେ ଯେ ଗୋଟିଏ କାଠକୁଣ୍ଢେଇ ତାଙ୍କ ମଧ୍ୟରେ ପଢ଼ିବାକୁ ଆସିଛି, ସେତେବେଳେ ସେମାନଙ୍କୁ ମଜା କରିବାପାଇଁ ଏକ ନୂଆ ସୁଯୋଗ ମିଳିଗଲା । ସେମାନେ ତାକୁ ନାନା ଭାବରେ ଚିଡ଼ାଇବାକୁ ଲାଗିଲେ । ପ୍ରଥମେ ପିନାକିୟୋ ସେମାନଙ୍କୁ କିଛି କହିଲା ନାହିଁ । କିନ୍ତୁ ଯେତେବେଳେ ସେମାନେ ବହୁତ ବିରକ୍ତ କଲେ ସେତେବେଳେ ସେ ଜଣକୁ ବିଧା ଓ ଜଣକୁ କହୁଣି ମାରିଲା । ଦୁହେଁ ଖୁବ୍ ପାଟିକରି କହିଲେ, ଆରେ ବାପରେ, ଏହାର ଗୋଡ଼ କେଡ଼େ ଟାଣୁଆ । ଓଃ, କହୁଣିଟା କଅଣ ପଥର ?

ଏଣିକି ପିଲାମାନେ ତାକୁ ଚିଡ଼ାଇବାକୁ ସାହସ କଲେ ନାହିଁ । ଧୀରେ ଧୀରେ ସମସ୍ତେ ତାର ବନ୍ଧୁ ହୋଇଗଲେ । ଏପରିକି ଗୁରୁଜୀ ମଧ ତାର ପ୍ରଶଂସା କରିବାକୁ ଲାଗିଲେ । ଯେଉଁ ପିଲାମାନଙ୍କର ମନ ପଢ଼ାରେ ଲାଗୁ ନଥିଲା, ସେମାନେ ମଧ ଧୀରେ ଧୀରେ ତାର ବନ୍ଧୁ ହୋଇଗଲେ । ଗୁରୁଜୀ ଏହି ଦୁଷ୍ଟ ପିଲାମାନଙ୍କ ସହିତ ମିଶିବାପାଇଁ ପିନାକିୟୋକୁ ମନା କରିଥାନ୍ତି । କିନ୍ତୁ ସେ ତାଙ୍କ କଥାକୁ ପରୁଆ କରେ ନାହିଁ ।

ଦିନେ ରାସ୍ତାରେ ପିନାକିୟୋ ସଙ୍ଗରେ ତାର କେତେକ ବନ୍ଧୁ ଦେଖାହେଲେ । ସେମାନେ କହିଲେ–'ପିନାକିୟୋ, ପିନାକିୟୋ, ଗୋଟିଏ ଭଲ ଖବର ଶୁଣିବ ? ଆଜି ସମୁଦ୍ରରେ ଗୋଟିଏ କୁକୁର ମାଛ ବାହାରିଛି, ମାଛଟା ଦେଖିବାକୁ ଯେପରି ପାହାଡ଼ । ଚାଲ, ଦେଖିବାକୁ ଯିବା । ଆମେ ଯାଉଛୁ, ତୁମେ ମଧ ଆସ ।'

କିନ୍ତୁ ପିନାକିୟୋ ଯିବାକୁ ମନା କଲା ଓ କହିଲା—ନା, ଗୁରୁଜୀ ମନା କରିଛନ୍ତି, ମୁଁ ଯିବିନାହିଁ ।'

'ଆରେ, ଏହି ମନା କରିବାପାଇଁ ତ ଗୁରୁଜୀଙ୍କୁ ଦରମା ମିଳୁଛି । ଚାଲ, ଘଣ୍ଟାକ ମଧ୍ୟରେ ଫେରିଆସିବା ।'

ପିନାକିୟୋ ରାଜି ହୋଇଗଲା । ସମସ୍ତେ ମିଶି ସମୁଦ୍ର ଆଡ଼କୁ ଦୌଡ଼ିଲେ । ସମସ୍ତଙ୍କ ଆଗରେ ପିନାକିୟୋ ଥିଲା । କାରଣ ସେ ସମସ୍ତଙ୍କ ଅପେକ୍ଷା ଭଲ ଦୌଡ଼ି ପାରୁଥିଲା । କିନ୍ତୁ ଯେତେବେଳେ ସେ ସମୁଦ୍ରକୂଳେ ପହଞ୍ଚିଲା, ଦେଖିଲା ଯେ ସେଠାରେ 'କୁକୁରମାଛ' ନାହିଁ କି ଅନ୍ୟ କିଛି ଦେଖିବାର ଜିନିଷ ନାହିଁ । ସେ ତା' ସାଥୀମାନଙ୍କୁ ପଚାରିଲା—'ମାଛ କାହିଁ ?' ସେମାନେ ହସି ହସି କହିଲେ—'ଏହିଠାରେ କେଉଁଠି ଥିବ କି କେଉଁଆଡ଼େ ଜଳଖିଆ କରିବାକୁ ଯାଇଥିବ !'

ସେମାନଙ୍କର ଏପରି ବ୍ୟବହାର ଦେଖି ପିନାକିୟୋ ଆଶ୍ଚର୍ଯ୍ୟ ହେଲା । ପ୍ରକୃତରେ ସେମାନେ ତାକୁ ସ୍କୁଲରୁ ତଡ଼ିଦେବାକୁ ଚାହୁଁଥିଲେ । ତେଣୁ ମିଛ ସତ କହି ଏଠାକୁ ଘେନି ଆସିଥିଲେ । ପିନାକିୟୋ ଏହି ଘଟଣା ଜାଣିପାରିବାରୁ ତା ମନରେ ଭାରି ରାଗ ହେଲା । କିନ୍ତୁ ସେ ଏକାକୀ ଓ ତାର ବିପକ୍ଷରେ ସମସ୍ତେ । ପୁଣି ସେମାନେ ଏହି ବିଷୟରେ ତା ସହିତ ଖୁବ୍ ଥଟ୍ଟା କରିବାକୁ ଲାଗିଲେ । କଥା ବଢ଼ିଚାଲିଲା । ସେମାନେ ମାଡ଼ପିଟ୍ କରିବାକୁ ପ୍ରସ୍ତୁତ ହୋଇଗଲେ । ପିନାକିୟୋ ମଧ୍ୟ ସେମାନଙ୍କୁ ମାରିବାକୁ ଆରମ୍ଭ କଲା । ସେମାନେ ତା ଉପରକୁ ମୋଟା ମୋଟା ବହି ଫିଙ୍ଗିଲେ । ଜଣେ ପିଲା ତା' ଉପରକୁ ଗୋଟିଏ ମୋଟା ଅଙ୍କବହି ଫିଙ୍ଗିଲା । କିନ୍ତୁ ପିନାକିୟୋ ସେଥିରୁ ରକ୍ଷା ପାଇଗଲା । ସେ ସେହି ବହି ଉଠାଇ ଅନ୍ୟ ଜଣେ ପିଲାର ମୁଣ୍ଡ ଉପରକୁ ଫିଙ୍ଗଲା । ପ୍ରକୃତରେ ଅଙ୍କବହିଟି ଖୁବ୍ ଭାରୀ ଥାଏ । ତେଣୁ ପିଲାଟି ସଙ୍ଗେ ସଙ୍ଗେ ବେହୋସ ହୋଇ ପଡ଼ିଗଲା ଓ କିଛିକ୍ଷଣ ପରେ ମରିଗଲା ।

ନିଜର ଜଣେ ସାଥୀ ମରିଯିବା ଦେଖି ଅନ୍ୟ ପିଲାମାନେ ସେଠାରୁ ପଳାଇଲେ । କିନ୍ତୁ ପିନାକିୟୋ ସେହିଠାରେ ଠିଆହୋଇ ରହିଲା । ବର୍ତ୍ତମାନ ସେ ଅନୁତାପ କଲା । କହିଲା—'ମୁଁ କାହିଁକି ଏ ଦୁଷ୍ଟ ପିଲାମାନଙ୍କ ସହିତ ଏଠାକୁ ଆସିଲି ! ଏମାନଙ୍କ ସହିତ ମିଶିବାକୁ ଗୁରୁଜୀ ମୋତେ ମନା କରିଥିଲେ ।' ତା'ପରେ ସେ ରୁମାଲ ଓଦାକରି ପିଲାଟିର ହୋସ୍ ଆଣିବାପାଇଁ ଚେଷ୍ଟା କଲା ।

ଏହି ସମୟରେ କେଉଁଠୁ ଦୁଇଜଣ ସିପାହୀ ଆସି ସେଠାରେ ପହଞ୍ଚିଲେ । ସେମାନେ ଗର୍ଜିଉଠି କହିଲେ–'କିରେ, କଅଣ କରୁଛୁ ? ଏଠି ପଡ଼ିଛି କିଏ ସେ ? ଏହାର କଅଣ ହେଲା ?'

'ସିପାହୀବାବୁ, ଏ ମୋ ସାଥିରେ ପଢୁଥିବା ଗୋଟିଏ ବାଳକ ।' 'ଏହାକୁ ମାଡ଼ ହୋଇଛି ।'

'ତାକୁ ମାଇଲା କିଏ ?'

'ଏହି ବହିରେ ତାକୁ ମାଡ଼ ହୋଇଛି ।'

'ଏହି ବହି କାହାର ? ତୁମର ? ଚାଲ, ଆମ ସହିତ ଥାନାକୁ ଚାଲ ।'

'ନା ନା, ମୁଁ କଅଣ କରିଛି ? ମୁଁ ଦୋଷୀ ନୁହେଁ ।'

କିନ୍ତୁ ସିପାହୀମାନେ କିଛି ଶୁଣିଲେ ନାହିଁ । ସେମାନେ ପିନାକିୟୋକୁ ଗିରଫ କରି ଟାଣି ଟାଣି ଥାନାକୁ ନେଇଗଲେ । କିଛିଦୂର ଯିବାପରେ ହଠାତ୍ ଗୋଟାଏ ଝଡ଼ ହେଲା ଓ ପିନାକିୟୋର ଟୋପି ଉଡ଼ିଗଲା । ସେ କହିଲା–'ସିପାହୀ ବାବୁ, ଟିକିଏ ରହନ୍ତୁ, ମୁଁ ମୋ ଟୋପି ନେଇଆସେ ।'

'ଯାଅ, ଶୀଘ୍ର ଆଣ ।' ପିନାକିୟୋ ଟୋପି ପାଖକୁ ଦୌଡ଼ିଗଲା ଓ ସେଠାରୁ ପଳାଇଲା । ସିପାହୀମାନେ ତାକୁ ପଳାଇ ଯିବାର ଦେଖି ତାଙ୍କ ଶିକାରୀ କୁକୁରକୁ ତା' ପଛେ ପଛେ ଛାଡ଼ିଦେଲେ । ସେ ଦୌଡ଼ିବାବେଳେ ଏତେ ଧୂଳି ଉଡୁଥାଏ ଯେ ରାସ୍ତାରେ ଯାଉଥିବା ଲୋକମାନେ ଘଟଣା କଅଣ କିଛି ବୁଝିପାରିଲେ ନାହିଁ ।

ପିନାକିୟୋ ପଳାଉଥାଏ ଓ କୁକୁର ପଛେ ପଛେ ଦଉଡୁଥାଏ । ଦଉଡ଼ି ଦଉଡ଼ି ପିନାକିୟୋ ସମୁଦ୍ର କୂଳରେ ଯାଇ ପହଞ୍ଚିଲା । ସେତେବେଳେ କୁକୁରଟା ଆସି ପାଖରେ ପହଞ୍ଚି ଯାଇଥାଏ । ସେ ଭୟରେ ସମୁଦ୍ରକୁ ଡେଇଁପଡ଼ିଲା । କୁକୁର ମଧ୍ୟ ନିଜକୁ ସଂଯତ କରି ନ ପାରି ତା ପଛେ ପଛେ ଡେଇଁପଡ଼ିଲା । କିଛି ସମୟ ପରେ କୁକୁର ବୁଡ଼ିଯିବାକୁ ଲାଗିଲା । ସେ ପାଟିକରି ପିନାକିୟୋର ସାହାଯ୍ୟ ମାଗିଲା । ପିନାକିୟୋର ତା' ପ୍ରତି ଦୟା ହେଲା । ସେ ତାର ଜୀବନ ରକ୍ଷାକଲା । କୁକୁର ତାକୁ ସଲାମ କରି ଘରକୁ ଫେରିଗଲା । ଗଲାବେଳେ ସେ କହିଗଲା, 'ପିନାକିୟୋ, ତୁମେ ମୋ ପ୍ରତି ବଡ଼ ଦୟା

ଦେଖାଇଛ । ଯଦି ଆଉ କେବେ ଆବଶ୍ୟକ ପଡ଼େ, ତେବେ ମୋତେ ଡାକିଆଣିବ ।'
ପିନାକିୟୋ ପାଣିରୁ ବାହାରି ମାଛମାନଙ୍କ ଗ୍ରାମକୁ ଗଲା । ସେଠାରେ ବୁଝିଲା, ଯେଉଁ ବାଳକ କାଲି ଆହତ ହୋଇଥିଲା, ସେ ମରିନାହିଁ । ଆଘାତ ମଧ୍ୟ ତାକୁ ଖୁବ୍ କମ୍ ହୋଇଛି । ସେ ଭଲ ହୋଇ ଘରକୁ ଫେରିଯାଇଛି । ସେଠାରୁ ସେ ପୁଣି ପରୀମହଲ ଆଡ଼କୁ ଗଲା । ସେତେବେଳକୁ ରାତି ହୋଇଯାଇଥାଏ । ଘୋର ଅନ୍ଧାର ହୋଇଥାଏ । କିଛି ସମୟ ପରେ ବର୍ଷା ମଧ୍ୟ ହେଲା । ଯେତେବେଳେ ପିନାକିୟୋ ପରୀର ଘରେ ପହଞ୍ଚିଲା, ସେତେବେଳେ ଦରଜାରେ ଖଟ୍‌ଖଟ୍ କରିବାକୁ ତାର ସାହସ ହେଲା ନାହିଁ । ସେ ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ସେଠାରେ ଚୁପ୍‌ଚାପ୍ ଠିଆହୋଇ ରହିଲା । ଭୟରେ ଧୀରେ ଧୀରେ କବାଟ ଖଟ୍‌ଖଟ୍ କଲା । ସଙ୍ଗେ ସଙ୍ଗେ ଘରର ଚତୁର୍ଥ ମହଲାରୁ ଗୋଟିଏ ଗେଣ୍ଡା ତଳକୁ ଚାହିଁଲା । ତା' ମୁଣ୍ଡରେ ମହମବତି ଥିଲା । ପିନାକିୟୋ ତାକୁ ଦରଜା ଖୋଲିବାକୁ କହିଲା । ଗେଣ୍ଡା ଉପରୁ ଉତ୍ତର ଦେଲା—'ଆଚ୍ଛା, ଆଚ୍ଛା, ତୁମେ ଅପେକ୍ଷା କର । ମୁଁ ଆସି ଦରଜା ଖୋଲି ଦେଉଛି । କିନ୍ତୁ ତରତର ହୁଅ ନାହିଁ । ତୁମେ ତ ଜାଣ, ମୁଁ ଗେଣ୍ଡା । ପୁଣି ଗେଣ୍ଡାମାନେ କୌଣସି କାମ ଶୀଘ୍ର କରିପାରନ୍ତି ନାହିଁ ।' ଏହା କହି ସେ ଝରକା ବନ୍ଦ କରିଦେଲା । ପ୍ରାୟ ଘଣ୍ଟାଏ ବିତିଗଲା । ପିନାକିୟୋ ବାହାରେ ଠିଆହୋଇ ଥଣ୍ଡାରେ ଥରୁଥାଏ । ଦରଜା ଖୋଲିଲା ନାହିଁ । ତେଣୁ ସେ ପୁଣି କବାଟ ଖଟ୍‌ଖଟ୍ କଲା । ଏଥର ତୃତୀୟ ମହଲର ଗୋଟିଏ ଝରକା ଖୋଲିଲା । ସେ ଝରକାରେ ମୁହଁ ଦେଖାଇ ଗେଣ୍ଡା କହିଲା—'ଆରେ ଭାଇ, ଆସୁଚି ତ, ତୁମେ ଏପରି ପାଟି କରୁଛ କାହିଁକି ? ମୁଁ ପ୍ରଥମେ ତୁମକୁ କହିଛି ଯେ, ଗେଣ୍ଡାମାନେ କୌଣସି କାମ ଶୀଘ୍ର କରିପାରନ୍ତି ନାହିଁ । ଆଚ୍ଛା ମୁଁ ଯାଉଛି ।'

ପୁଣି ଝରକା ବନ୍ଦ ହୋଇଗଲା ।

ପୁଣି ଦୁଇଘଣ୍ଟା ବିତିଗଲା । ଦରଜା ଖୋଲିଲା ନାହିଁ । ସେତେବେଳକୁ ରାତି ଦୁଇଟା ବାଜୁଥାଏ । ପୂରା ଚାରିଘଣ୍ଟା ହୋଇଗଲା; କିନ୍ତୁ ଗେଣ୍ଡା ଏ ପର୍ଯ୍ୟନ୍ତ ତଳକୁ ଓହ୍ଲାଇଲା ନାହିଁ । ପିନାକିୟୋ ରାଗିଗଲା । ସେ ଖୁବ୍ ଜୋର୍‌ରେ ଦରଜାକୁ ଲାତ ମାଇଲା । କିନ୍ତୁ ଏ କଅଣ ? ତାର ଗୋଡ଼ ଦରଜା ସନ୍ଧିରେ ଏପରି ଅଟକିଗଲା ଯେ, ଯେପରି କାଠକୁନ୍ଦାରେ କୌଣସି କିଳା ବାଡ଼ିଆ ହୋଇଥାଏ । ପିନାକିୟୋ ବହୁ ଚେଷ୍ଟା

କଲା; କିନ୍ତୁ ତାର ଗୋଡ଼ ତିଳେ ହେଲେ ବାହାରିଲା ନାହିଁ । ସେ ସେହିପରି ସକାଳ ପର୍ଯ୍ୟନ୍ତ ଗୋଟିଏ ଗୋଡ଼ରେ ଠିଆ ହୋଇଥାଏ । ପୁରା ନଅଘଣ୍ଟା ପରେ ସକାଳ ହେଉ ହେଉ ଗେଣ୍ଡା ଦରଜା ଖୋଲିଲା । ପିନାକିଯୋର ଏପରି ଅବସ୍ଥା ଦେଖି ଗେଣ୍ଡା ଖିଲି ଖିଲି ହୋଇ ହସିପକାଇଲା । ତାର ଏପରି ହସିବା ପିନାକିଯୋକୁ ଭଲ ଲାଗିଲା ନାହିଁ । କିନ୍ତୁ ସେ ବିସ୍ମିତ ଭାବେ ପଚାରିଲା—'ଗେଣ୍ଡା ଭାଇ ! ଦରଜା ତୁମେ ତ ଶୀଘ୍ର ଖୋଲିଦେଲ ! କିନ୍ତୁ ମୋର ଏହି ଗୋଡ଼ଟା ଦରଜା ସନ୍ଧିରୁ ବାହାର କରିଦିଅ, ନଚେତ୍ ପରୀକୁ ଡାକିଆଣ ।'

ଗେଣ୍ଡା କହିଲା—'ଭାଇ, ଏ କାମ ତ ବଢ଼େଇର । ସେ ଦରଜାକୁ କାଟିଦେବ କିମ୍ବା ତୁମର ଗୋଡ଼ କାଟିଦେବ । କିନ୍ତୁ ମୁଁ ତ ବଢ଼େଇ ନୁହେଁ । ଆଚ୍ଛା, ତୁମକୁ କଅଣ ସାହାଯ୍ୟ କରିପାରେ ? ଯେଉଁ ପରୀ କଥା କହୁଛ, ସେ ତ ଶୋଇଛି । ତାକୁ ଉଠାଇହେବ ନାହିଁ ।'

'ଆଚ୍ଛା, କିଛି କରି ନ ପାରିବ ତ ମୋ ପାଇଁ କିଛି ଖାଇବାକୁ ଆଣିଦିଅ । ମୋତେ ଭାରି ଭୋକ ହେଉଛି ।'

'ହଁ ହଁ, ବର୍ତ୍ତମାନ ଆଣୁଛି ।' କହି ଗେଣ୍ଡାଟି ଚାଲିଗଲା ।

ପ୍ରାୟ ସାଢ଼େ ତିନିଘଣ୍ଟା ପରେ ଗେଣ୍ଡା ତା ପାଇଁ ରୁପା ଥାଳିରେ କିଛି ଜଳଖିଆ ଆଣିଲା । ଜଳଖିଆଗୁଡ଼ିକ ଦେଖିବାକୁ ଖୁବ୍ ସୁନ୍ଦର ହୋଇଥାଏ । କିନ୍ତୁ ଯେତେବେଳେ ସେ ଖାଇବାକୁ ଆରମ୍ଭ କଲା, ତାକୁ କାନ୍ଦ ମାଡ଼ିଲା; କାରଣ ରୋଟିଗୁଡ଼ିକ ସିମେଣ୍ଟରେ ତିଆରି ହୋଇଥିଲା ଓ ଅନ୍ୟ ଜିନିଷଗୁଡ଼ିକ କାଠରେ ତିଆରି ହୋଇଥିଲା । ସେଗୁଡ଼ିକ କେବଳ ଦେଖିବାପାଇଁ, ଖାଇବାପାଇଁ ନୁହେଁ ।

ପିନାକିଯୋ କ୍ଳାନ୍ତ, କ୍ଷୁଧା ଓ ରାଗରେ ଏକାବେଳକେ ବେହୋସ୍ ହୋଇଗଲା । ଯେତେବେଳେ ତାର ହୋସ୍ ହେଲା, ଦେଖେ ତ ସେ ଗୋଟିଏ ପଲଙ୍କରେ ଶୋଇଛି । ତା'ପାଖରେ ପରୀ ବସିଛି । ପରୀ କହିଲା—'ପିନାକିଯୋ, ମୁଁ ତୁମକୁ ଏଥର ମଧ କ୍ଷମା କଲି । କିନ୍ତୁ ମନେରଖ, ଯଦି ତୃତୀୟଥର ତୁମେ କଥା ନ ମାନିବ, ତେବେ ଭଲ ହେବ ନାହିଁ ।'

ସେହିଦିନଠାରୁ ପିନାକିଯୋ ଖୁବ୍ ସମ୍ଭାଳି ହୋଇ ରହିଲା । ସେ ଦୈନିକ ସ୍କୁଲକୁ ଯାଏ ଓ ନିଜେ ଜଣେ ଭଲପିଲା ହେବା ପାଇଁ ଚେଷ୍ଟା କରେ । ଶେଷରେ ଦିନେ ପରୀ

କହିଲା—'କାଲି ତୁମର ଇଚ୍ଛା ପୂରଣ କରିଦିଆଯିବ । କାଲିଠାରୁ ତୁମେ ଆଉ କାଠକୁଣ୍ଢେଇ ହୋଇ ରହିବ ନାହିଁ । ତୁମେ ସତରେ ଗୋଟିଏ ବାଳକ ହୋଇଯିବ ।'

ଏହା ଶୁଣି ପିନାକିୟୋ ଖୁସିରେ ନାଚିଉଠିଲା । କାଲି ତା' ସ୍କୁଲର ସାଥୀମାନଙ୍କୁ ଏଥିପାଇଁ ଗୋଟିଏ ଭୋଜି ଦିଆଯିବ ବୋଲି ଜଣାଇ ଦିଆଗଲା । କାଲି ଦିନଟି ଏହି କାଠକୁଣ୍ଢେଇର ଜୀବନରେ ସବୁଠାରୁ ଖୁସିର ଦିନ !

ପିନାକିୟୋ ପରୀକୁ ପଚାରି ତା' ବନ୍ଧୁମାନଙ୍କୁ ନିମନ୍ତ୍ରଣ ଦେବାକୁ ବାହାରିଲା । ସେ ସମସ୍ତ ବନ୍ଧୁଙ୍କୁ କାଲି ଉତ୍ସବକୁ ଆସିବାପାଇଁ କହିଆସିଲା । ତାର ବନ୍ଧୁମାନଙ୍କ ମଧ୍ୟରେ ରୋମିୟୋ ନାମକ ଜଣେ ବାଳକ ଥିଲା, ଯାହାକୁ କି ସେ ଖୁବ୍ ଭଲପାଏ । ତାକୁ ସମସ୍ତେ 'ସିକିୟାଁ ପହିଲିମାନ୍' ବୋଲି ଡାକନ୍ତି । କାରଣ ସେ ଭାରି ଦୁର୍ବଳ ।

ସିକିୟାଁ ପହିଲିମାନ ସ୍କୁଲର ସବୁ ପିଲାମାନଙ୍କ ମଧ୍ୟରେ ଅଳସୁଆ । କିନ୍ତୁ ପିନାକିୟୋ ତାକୁ ଖୁବ୍ ଭଲପାଏ । ପିନାକିୟୋ ତାକୁ ନିମନ୍ତ୍ରଣ ଦେବାପାଇଁ ଚାରିଥର ତା' ଘରକୁ ଗଲା; କିନ୍ତୁ ତାକୁ ପାଇଲା ନାହିଁ । ବହୁତ ଖୋଜାଖୋଜି କରିବା ପରେ ସେ ତାକୁ ଜଣେ କୃଷକର କୁଡ଼ିଆ ପଛରେ ଲୁଚିଥିବାର ଦେଖିଲା । ପିନାକିୟୋ ତାକୁ ପଚାରିଲା— 'ତୁମେ ଏଠାରେ କଅଣ କରୁଛ ?'

'ମୁଁ ରାତିକୁ ଅପେକ୍ଷା କରିଛି । ଅସଲ କଥା—ମୁଁ ଏଠାରୁ ଅନ୍ୟ ଦେଶକୁ ପଳାଇଯାଉଛି । ଯେଉଁ ଦେଶ ଦୁନିଆରେ ସବୁଠାରୁ ସୁନ୍ଦର । ତାର ନାମ 'ମୂର୍ଖ ନଗରୀ ।'

ପିନାକିୟୋ ତାକୁ କାଲି ତାର ଉତ୍ସବର ନିମନ୍ତ୍ରଣ ଦେଇ କହିଲା ଯେ, ମୁଁ କାଲି କାଠକୁଣ୍ଢେଇରୁ ବାଳକ ହେବାକୁ ଯାଉଛି । ସିକିୟାଁ ପହିଲିମାନ ତାକୁ ବୁଝାଇଲା— 'ଆରେ ଛାଡ଼ ସେସବୁ କଥା । ମୋ ସଙ୍ଗରେ ଚାଲ ତ । ମୂର୍ଖ ନଗରୀରେ ନାହିଁ ସ୍କୁଲ, ନାହିଁ ମାଷ୍ଟର, ନାହିଁ ବହି । ବେଶ୍, ଖୁବ୍ ଖାଅ ଓ ଖେଳ । ସେଠାରେ ପ୍ରତିଦିନ ଛୁଟି ମିଳେ । ମୁଁ ତ ଭାଇ ସେଠାକୁ ନିଶ୍ଚୟ ଯିବି । ତୁମେ ମଧ୍ୟ ଚାଲ । ସେଠି କଅଣ ଆମେ ଏକା ରହିବା ? ଅନେକ ପିଲା ମଧ୍ୟ ଯାଉଛନ୍ତି ।'

ପିନାକିୟୋ ମଧ୍ୟ ତା'ସହିତ ଯିବାପାଇଁ ପ୍ରସ୍ତୁତ ହୋଇଗଲା । ଅଳ୍ପ ସମୟ ପରେ ଗୋଟିଏ ଗାଡ଼ି ସେଠାରେ ପହଞ୍ଚିଲା । ସେଥିରେ ବହୁତ ପିଲା ବସିଥାଆନ୍ତି । ସେମାନେ ସବୁ ମୂର୍ଖନଗରୀର ଯାତ୍ରୀ ଥିଲେ । ଗାଡ଼ିରେ ନାନା ରଙ୍ଗର ବାର ହଳ

ଗଧ ଯୋଚା ହୋଇଥିଲେ । ଏହି ଚବିଶଟି ଗଧ ଗୋଡ଼ରେ ମଣିଷ ବ୍ୟବହାର କରୁଥିବା ଜୋତା ପିନ୍ଧିଥିଲେ । ଏଣୁ ଗାଡ଼ି ଚାଲିଲା ବେଳେ ଶବ୍ଦ କମ୍ ହେଉଥାଏ । ଗାଡ଼ି ଚକରେ ମଧ୍ୟ କନା ଗୁଡ଼ା ହୋଇଥାଏ । ଏହି ଗାଡ଼ିକୁ ଯେଉଁ ଗାଡ଼ିଆଳ ଚଳାଉଥାଏ, ସେ ଏକ ଅଦ୍ଭୁତ ପ୍ରାଣୀ । ସେ ଯେତିକି ଲମ୍ବା ତା'ଠାରୁ ଅଧିକ ମୋଟା । ଦେହ ଲହୁଣି ପରି ଚିକ୍କଣ ଓ ତାର କଥା ବିଲେଇ ପରି ଅଦ୍ଭୁତ ।

ଗାଡ଼ି ଯେତେବେଳେ ନିକଟକୁ ଆସିଗଲା, ସିକିୟାଁ ପହିଲିମାନ ଗାଡ଼ି ଅଟକାଇବାକୁ ଇସାରା କଲା । ଗାଡ଼ିଆଳ ମିଆଉଁ ମିଆଉଁ ହୋଇ କହିଲା–'ତୁମେ ବି ପୁଅ ମୂର୍ଖନଗରୀକୁ ଯିବାପାଇଁ ବସିଛ ? କିନ୍ତୁ ଦେଖ, ଗାଡ଼ିରେ ତ ବସିବାକୁ ଜାଗା ନାହିଁ । କେଉଁଠି ବସିବ ?'

'ତୁମେ ଫିକର କର ନାହିଁ । ମୁଁ ଏଇଠି ବସିଯିବି ।'

ଏହା କହି ସିକିୟାଁ ପହିଲିମାନ ଗାଡ଼ିର ସିଢ଼ି ଉପରେ ବସିପଡ଼ିଲା । ପୁଣି ଗାଡ଼ିଆଳ ପିନାକିୟୋକୁ ମୂର୍ଖନଗରୀ ଯିବାପାଇଁ ଡାକିଲା । ପିନାକିୟୋ ପ୍ରଥମେ ଅମଙ୍ଗ ହେଲା ଏବଂ କହିଲା–'ପରୀ ରାଜି ହେବ ନାହିଁ, ମୁଁ ଯିବି ନାହିଁ । କିନ୍ତୁ ଯେତେବେଳେ ସମସ୍ତେ ମିଳି ତାକୁ ବୁଝାଇଲେ, ସେ ରାଜି ହୋଇଗଲା । କୌଣସିଠାରେ ଜାଗା ନ ପାଇବାରୁ ପିନାକିୟୋ ଗୋଟିଏ ଗଧ ଉପରେ ବସି ଯିବାପାଇଁ ପ୍ରସ୍ତୁତ ହେଲା । କିନ୍ତୁ ଯେତେବେଳେ ସେ ଗଧ ଉପରେ ବସିବାକୁ ଚେଷ୍ଟା କଲା, ଗଧ ତାକୁ ଗୋଟିଏ ନାତ ମାରିଦେଲା । ଗାଡ଼ିରେ ବସିଥିବା ପିଲାମାନେ ଖିଲ୍ ଖିଲ୍ ହୋଇ ହସିବାକୁ ଲାଗିଲେ; କିନ୍ତୁ ଗାଡ଼ିଆଳ ହସିଲା ନାହିଁ । ସେ ଚୁପ୍‌ଚାପ୍ ଗଧ ନିକଟକୁ ଆସିଲା ଓ ତା କାନରୁ ଅଧେ କାଟିନେଲା । ଏହି ସୁଯୋଗରେ ପିନାକିୟୋ ଗଧର ପିଠିରେ ବସିପଡ଼ିଲା । ପିଲାମାନେ ତାଳିମାରି ତାକୁ ପ୍ରଶଂସା କରିବାକୁ ଲାଗିଲେ । ଏଥର ମଧ୍ୟ ଗଧ ପିନାକିୟୋକୁ ତଳେ ପକାଇଦେଲା । କିନ୍ତୁ ଯେତେବେଳେ ଗାଡ଼ିଆଳ ଗଧର ଦ୍ୱିତୀୟ କାନରୁ ଅଧେ କାଟିନେଲା, ସେତେବେଳେ ସେ ଆଉ ପିନାକିୟୋକୁ ହଇରାଣ କଲା ନାହିଁ । ଗାଡ଼ି ଚାଲିଲା ।

କିଛି ସମୟ ପରେ ଗାଡ଼ି ଯାଇ ମୂର୍ଖନଗରୀରେ ପହଞ୍ଚିଲା । ଏହା ଏକ ଅଦ୍ଭୁତ ଦେଶ । ଏଠାରେ କେବଳ ୮ ବର୍ଷଠାରୁ ୧୪ ବର୍ଷ ପର୍ଯ୍ୟନ୍ତ ପିଲାମାନେ ରହନ୍ତି । ସହରରେ ବୁଢ଼ାମାନଙ୍କ ନାମଗନ୍ଧ ନାହିଁ । ଦିନସାରା ରାସ୍ତା, ଗଳି ଓ ଘରମାନଙ୍କରେ

ଚହଲ ଥାଏ, କେହି କାହାରି କଥା ଶୁଣନ୍ତି ନାହିଁ । ମନା କରିବା ଲୋକ ଏଠାରେ କେହି ନାହାନ୍ତି । ଗାଅ, ବଜାଅ, ନାଚ, କୁଦ, ହସ, କାନ୍ଦ ଯେତେବେଳେ ଯାହା ମନକୁ ଯାହା ଆସେ, ସେ କରେ । କଥାବାର୍ତ୍ତା ହୁଅ ବା ମାଡ଼ପିଟ୍ ଲଗାଅ, କେହି ବାଧା ଦେବାକୁ ନାହିଁ । ପିନାକିୟୋ ଦେଖିଲା ଯେ, ପ୍ରତି ଛକ ମାନଙ୍କରେ ପିଲାମାନେ ଖେଳରେ ବ୍ୟସ୍ତ । କିଏ କାଠଘୋଡ଼ାରେ ବସି ତାକୁ ପିଟୁଛି, କିଏ କାହାକୁ ଖୁବ୍ ପିଟୁଛି ତ କିଏ ରାସ୍ତା ଉପରେ ଶୋଇ ଆରାମ କରୁଛି ଓ ମନଫୂର୍ତ୍ତି ଗୀତ ଗାଉଛି । ପଥରର ସିପାହୀ ପହରା ଦେଉଛି । ପିଲାମାନେ ତାକୁ ଉଠାଇ ଏଠି ସେଠି ରଖିଦେଉଛନ୍ତି । ସହରର ଘରମାନଙ୍କରେ ନାନା ପ୍ରକାର ସାଇନ୍‌ବୋର୍ଡ଼ ଲେଖାହୋଇଛି–ଖେଳ, କୁଦ, ଫୂର୍ତ୍ତି କର । ଖାଅ, ପିଅ, ମଉଜ କର । ଲେଖାପଢ଼ା ଛାଡ଼ିଦିଅ, ଗଣିତ ପଢ଼ ନାହିଁ । ସ୍କୁଲ ଯିବା ବନ୍ଦ କର ଇତ୍ୟାଦି ।

ପିନାକିୟୋ, ସିକିୟାଁ ପହିଲିମାନ ଓ ଗାଡ଼ିରେ ଆସିଥିବା ଅନ୍ୟ ପିଲାମାନେ ମୂର୍ଖନଗରୀରେ ପହଞ୍ଚୁ ପହଞ୍ଚୁ ଖେଳିବା ଓ ଡେଇଁବାରେ ଲାଗିପଡ଼ିଲେ । କିଏ ବିଗୁଲ୍ ବଜାଇଲା, କିଏ ଚକ ବୁଲାଇଲା, କିଏ ନଟୁ ବୁଲାଇଲା । ପୁଣି କିଏ ଖୁବ୍ ଜୋରରେ ଟାଣି ହୋଇ ଗୀତ ବୋଲିବାକୁ ଲାଗିଲା । ଦେଖୁ ଦେଖୁ ତାଙ୍କର ଅନେକ ସାଥୀ ମଧ୍ୟ ଜୁଟିଗଲେ ।

ଏହି ସହରରେ କେତେବେଳେ ଦିନ ଯାଏ ଓ କେତେବେଳେ ରାତି ଆସେ, ନାଚ ଖେଳ ଝୁଙ୍କରେ କିଛି ଜଣାପଡ଼େ ନାହିଁ । ଧୀରେ ଧୀରେ ପାଞ୍ଚମାସ କଟିଗଲା । ଦିନେ ପିନାକିୟୋ ବଡ଼ ବିପଦରେ ପଡ଼ିଲା । ସକାଳୁ ଉଠି କାନରେ ହାତମାରି ଦେଖେ ତ, ତା' କାନ ହାତେ ଲମ୍ବ ହୋଇଯାଇଛି । ଦେଖିବାକୁ ଅବିକଳ ଗଧ କାନ ପରି । ପିନାକିୟୋ ମନରେ ଭାରି ଦୁଃଖହେଲା । ସେ କାନ୍ଦିବାକୁ ଲାଗିଲା । କିନ୍ତୁ କେହି ତା' ଆଡ଼କୁ ଚାହିଁଲେ ନାହିଁ । ଶେଷରେ ସେ ତା' ଲମ୍ବା କାନ ଦୁଇଟାକୁ ଗୋଟିଏ ଟୋପି ଭିତରେ ଲୁଚାଇ ପୁରୁଣା ବନ୍ଧୁ ସିକିୟାଁ ପହଲିମାନକୁ ଦେଖା କରିବାପାଇଁ ବାହାରିଲା ।

ସିକିୟାଁ ପହିଲିମାନ ପାଖରେ ପହଞ୍ଚି ଦେଖେ ତ ତାର ମଧ୍ୟ ଅବସ୍ଥା ବହୁତ ଖରାପ । ତା' ଆଣ୍ଠୁରେ ଆଘାତ ହୋଇଛି । ସେମାନେ ପରସ୍ପର ଦୁଃଖରେ ଏତେ ଦୁଃଖୀ ହେଲେ ଯେ, ଦୁହେଁ କୁଣ୍ଢାକୁଣ୍ଢି ହୋଇ କାନ୍ଦିବାକୁ ଲାଗିଲେ । କିନ୍ତୁ ସେମାନଙ୍କର

କାନ୍ଦ ମଧ୍ୟ ଗଧ ପରି ଶୁଭିଲା; ଯେପରି ଦୁଇଟା ଗଧ ବୋବାଉଛନ୍ତି । ସିକିୟାଁ ପହିଲିମାନ୍‌ର କାନ ଦୁଇଟା ମଧ୍ୟ ପିନାକିୟୋ ପରି ଲମ୍ବା ହୋଇଯାଇଥାଏ । ଦୁହେଁ ନିଜ ନିଜର ଟୋପି ଖୋଲିଦେଲେ ଓ ପରସ୍ପରକୁ ଚାହିଁ କାନ୍ଦିବାକୁ ଲାଗିଲେ ।

ଏତିକିବେଳେ କିଏ ବାହାରୁ ଦରଜା ଖଟ୍ ଖଟ୍ କରି କହିଲା–'ଶୀଘ୍ର ଖୋଲ । ଶୀଘ୍ର ଦରଜା ଖୋଲ । ମୁଁ ସେହି ଗାଡ଼ିଆଳ । ଖୋଲିଦିଅ, ନୋହିଲେ ଭଲ ହେବ ନାହିଁ ।'

ଏଥର ଦରଜା ନ ଖୋଲିବାରୁ ଗାଡ଼ିଆଳ ଦରଜା ଭାଙ୍ଗି ଭିତରେ ପଶିଲା ଓ ହସି ହସି କହିଲା–'ପିଲାଏ ! ତୁମେ ଭୁକିବାଦ୍ୱାରା ଖୁବ୍ ଭଲ କରିଛ । ସେଥିପାଇଁ ତ ମୁଁ ଏଠାକୁ ଚାଲିଆସିଲି । ଏହା କହି ସେ ଦୁହିଁଙ୍କ ପିଠିରେ ହାତ ବୁଲାଇଦେଲା । ବର୍ତ୍ତମାନ ଦୁହେଁ ବିଲ୍‌କୁଲ୍ ଗଧ ହୋଇଯାଇଥିଲେ । ଗାଡ଼ିଆଳ ଦୁହିଁଙ୍କୁ ବଜାରରେ ବିକ୍ରି କରିବାପାଇଁ ଉତ୍ତମରୂପେ ଧୂଆଧୋଇ କରି ଠିକ୍ କଲା । ଗ୍ରାହକ ମିଳିବାରେ ମଧ୍ୟ ଡେରି ହେଲା ନାହିଁ । ସିକିୟାଁ ପହିଲିମାନ୍‌କୁ ଜଣେ କୃଷକ କିଣିନେଲା । କାରଣ ତାର ଗଧଟା କାଲି ମରିଯାଇଥିଲା । ପିନାକିୟୋକୁ ଜଣେ ସର୍କସବାଲା କିଣିନେଲା । ଅସଲ କଥା, ଗାଡ଼ିଆଳ ଭାରି ଦୁଷ୍ଟ ଯାଦୁକର ଥିଲା । ସେ ଏହିପରି ସାରା ଦୁନିଆର ପିଲାମାନଙ୍କୁ ଭୁଲାଇ ମୂର୍ଖ ନଗରୀକୁ ନେଇଆସେ ଓ ଯେତେବେଳେ ସେମାନେ ଖେଳି ଖେଳି ଗଧ ହୋଇଯାନ୍ତି, ସେମାନଙ୍କୁ ନେଇ ବଜାରରେ ବିକିଦିଏ । ଏହି ବ୍ୟବସାୟରେ ସେ ବଡ଼ ଧନୀ ହୋଇଥାଏ ।

ସିକିୟାଁ ପହିଲିମାନ୍‌ର ଅବସ୍ଥା କଅଣ ହେଲା ତା' ଆମେ ଜାଣୁ ନାହିଁ । କିନ୍ତୁ ପିନାକିୟୋ ବିଷୟରେ ଆମେ ଜାଣୁ ଯେ, ତାକୁ ଖୁବ୍ ପରିଶ୍ରମ କରିବାକୁ ପଡୁଥିଲା । ସର୍କସବାଲା ତାକୁ ଦିନସାରା ଅନ୍ୟ ଜୀବଜନ୍ତୁଙ୍କ ସହିତ ନଚାଏ ଓ ସନ୍ଧ୍ୟାବେଳକୁ ଦି'ମୁଠା ଘାସ ବା ଭୁଷି ଖାଇବାକୁ ଦିଏ । ଥରେ ଯେତେବେଳେ ସେ ଘାସ ଭୁଷି ଖାଇବାକୁ ଅମଙ୍ଗ ହେଲା, ସେତେବେଳେ ତାକୁ ଖୁବ୍ ମାଡ଼ ଖାଇବାକୁ ପଡ଼ିଲା । ସେହିଦିନଠାରୁ ସେ ଚୁପ୍‌ଚାପ୍ ଘାସ ଖାଇବାକୁ ଆରମ୍ଭ କଲା । ସେ ବାରମ୍ବାର ଅନୁତାପ କରି ଭାବୁଥାଏ ଯେ–'ଆହା, ମୁଁ କେଉଁଠି ଆସି ପଡ଼ିଲି !' କିନ୍ତୁ ବର୍ତ୍ତମାନ ଧୈର୍ଯ୍ୟ ଧରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ସର୍କସ୍‌ର ମାଲିକ ମାରିପିଟି ତାକୁ କେତେକ ଖେଳର କୌଶଳ

ଶିଖାଇଦେଲେ । ଯେଉଁଦିନ ସେ ଉତ୍ତମରୂପେ ଖେଳ ଶିଖିଗଲା, ସେଦିନ ସର୍କସର ଆୟୋଜନ କରାଗଲା । ସହରର ସ୍ଥାନେ ସ୍ଥାନେ ବିଜ୍ଞାପନ ମରାଗଲା । ସେଥିରେ ଲୋକମାନଙ୍କୁ ଜଣାଇ ଦିଆଗଲା–'ସର୍କସରେ ଅନ୍ୟାନ ଜୀବଜନ୍ତୁମାନଙ୍କ ବ୍ୟତୀତ ପିନାକିୟୋ ନାମକ ଗୋଟିଏ ଗଧର ଖେଳ ଦେଖା ହେବ ।'

ସନ୍ଧ୍ୟାବେଳେ ଖୁବ୍ ସାଜସଜା ହୋଇଥିବା ଗୋଟିଏ ତମ୍ବୁ ଭିତରେ ଖେଳ ଆରମ୍ଭ ହେଲା । ସେଦିନ ଏତେ ଲୋକ ଖେଳ ଦେଖିବାକୁ ଆସିଥିଲେ ଯେ, ସେମାନଙ୍କୁ ଠିକ୍ ଜାଗାରେ ବସାଇବା ଅସମ୍ଭବ ହୋଇପଡ଼ିଲା । ଇଞ୍ଚେ ହେଲେ ଜାଗା ଖାଲି ରହିଲା ନାହିଁ । ପିନାକିୟୋ ନାମକ ଗଧର ଖେଳ ଦେଖିବାପାଇଁ ବେଳକୁ ବେଳ ଲୋକ ଜମିବାକୁ ଲାଗିଲେ । ସମସ୍ତେ ବସିଯିବା ପରେ ସର୍କସର ମାଲିକ ତାଙ୍କ ଖେଳକୁ ପ୍ରଶଂସା କରି ଏକ ଲମ୍ବା ଭାଷଣ ଦେଲେ । ସେତେବେଳେ ପିନାକିୟୋକୁ ବଢ଼ିଆ ପୋଷାକ ପିନ୍ଧାଇ ଦେଇଥାନ୍ତି । ଭାଷଣ ପରେ ତାକୁ ସର୍କସ ପଡ଼ିଆକୁ ଘେନି ଆସିଲେ । ଦର୍ଶକମାନେ ଖୁସିହୋଇ ତାଳି ମାରିବାକୁ ଆରମ୍ଭ କଲେ । ସେତେବେଳେ ପିନାକିୟୋର ସାଜ ପୋଷାକ ଭାରି ଚମତ୍କାର ଦିଶୁଥାଏ । ତା' ଉପରେ ବଢ଼ିଆ ଜୀନ୍ ବସା ହୋଇଥାଏ ଓ ତହିଁରେ ସୁନେଲି ସୂତା ଲାଗିଥାଏ । ଲଗାମ୍ ପାଲିସ୍ ଦିଆହୋଇ ଖୁବ୍ ଚକ୍‌ଚକ୍ ଦିଶୁଥାଏ । ତାରା ଖୁରାଗୁଡ଼ିକୁ କଳା ଚକଚକିଆ ରଙ୍ଗରେ ରଙ୍ଗା ହୋଇଥିଲା । ନାନା ରଙ୍ଗର ରିବନ୍ ତା ଗୋଡ଼ରେ ବନ୍ଧା ହୋଇଥିଲା । ସର୍କସ ମାଲିକ ପିନାକିୟୋକୁ ପ୍ରଶଂସା କରି ଗୋଟିଏ ଭାଷଣ ଆରମ୍ଭ କଲେ ଓ କିଛି ସମୟ କହିବା ପରେ ସେ ପିନାକିୟୋ ଆଡ଼କୁ ମୁହଁ ବୁଲାଇ କହିଲେ–'ପିନାକିୟୋ ! ଆଜି ସର୍କସ୍‌ରେ ତୁମର ପ୍ରଥମ ଦିନ । ନଇଁପଡ଼ି ଏହି ସାହେବମାନଙ୍କୁ ସଲାମ୍ କର ।'

ପିନାକିୟୋ ଆଣ୍ଠୁଭାଙ୍ଗି ଓ ମୁଣ୍ଡ ନୁଆଁଇ ସମସ୍ତଙ୍କୁ ସଲାମ୍ କଲା । ତା'ପରେ ତା'ର ମାଲିକ ଚାବୁକ୍ ଫଟ୍‌ଫଟ୍ କରି ତାକୁ ଧୀରଭାବେ ଦୌଡ଼ିବାକୁ ହୁକୁମ୍ ଦେଲେ । ତା'ପରେ ତାକୁ ଖୁବ୍ ଜୋରରେ ଦୌଡ଼ାଇଲେ । ଦର୍ଶକମାନେ ପିନାକିୟୋ ଆଡ଼େ ଚାହିଁଥାନ୍ତି । ଏତିକିବେଳେ ମାଲିକ ପିସ୍ତଲ ଦାବିଲେ । ସଙ୍ଗେ ସଙ୍ଗେ ପିନାକିୟୋ ତଳେ ପଡ଼ିଗଲା । ଯେପରି ତାକୁ ଗୁଳି ଲାଗିଛି ଓ ସେ ମରିଯାଇଛି । କିନ୍ତୁ ସେ ପୁଣି ହଠାତ୍ ଉଠି ଠିଆହେଲା । ଲୋକେ ତାଳିମାରି ତାକୁ ପ୍ରଶଂସା କଲେ । ପିନାକିୟୋ ବେକ ଉଠାଇ ଚାରିଆଡ଼କୁ ଚାହିଁଲା ।

ହଠାତ ସାମନାରେ ବସିଥିବା ଜଣେ ସୁନ୍ଦରୀ ସ୍ତ୍ରୀଲୋକ ଉପରେ ତାର ଦୃଷ୍ଟି ପଡ଼ିଲା । ସ୍ତ୍ରୀଲୋକଟି ବେକରେ ଗୋଟିଏ ସୁନାହାର ପିନ୍ଧିଥାଏ ଓ ତହିଁରେ ଗୋଟିଏ ତାବିଜ ଝୁଲୁଥାଏ । ତାବିଜ ଉପରେ ଏକ କାଠ କୁଣ୍ଢେଇର ଚିତ୍ର ଥିଲା ।

'ଆରେ ଏ ତ ମୋରି ଚିତ୍ର ! ସେ ସ୍ତ୍ରୀଲୋକଟି ମୋ ପରୀ ଭଉଣୀ ।'

ସେ ଖୁସିରେ ନାଚି ନାଚି ଖୁବ୍ ପାଟିକରି ପରୀକୁ ଡାକ ପକାଇଲା । କିନ୍ତୁ ଲୋକେ ବୁଝିଲେ ଯେ, ଗଧ ଖୁସିହୋଇ ଡାକୁଛି । ସେମାନେ ଅଧିକ ଜୋରରେ ତାଳି ମାରିବାକୁ ଲାଗିଲେ । ସର୍କସ୍ ଭିତରେ ଖୁବ୍ ଚହଳ ପଡ଼ିଗଲା । ପିନାକିଯୋର ମାଲିକକୁ କିନ୍ତୁ ଏହା ଭଲ ଲାଗିଲା ନାହିଁ । ତେଣୁ ସେ ଚାବୁକର ବେଣ୍ଟରେ ତା' ନାକକୁ ଲକ୍ଷ୍ୟକରି ପାହାରେ ପିଟିଦେଲେ । ମାଡ଼ଖାଇ ଗଧ ନାକରୁ ସିଙ୍ଘାଣି ବାହାରିପଡ଼ିଲା ଓ ସେ ଜିଭ ବାହାର କରି ଚାଟିବାକୁ ଲାଗିଲା; କିନ୍ତୁ ତାର ଦରଜ କମିଲା ନାହିଁ । ଏଣେ ଦେଖେ ତ, ପରୀ ସେ ସ୍ଥାନରୁ ଉଠି କେଉଁଆଡ଼େ ଚାଲିଗଲାଣି । ତା'ଆଖିରୁ ଲୁହ ବୋହିଆସିଲା । କିନ୍ତୁ ତାହା କେହି ଦେଖିପାରିଲେ ନାହିଁ । ତାର ମାଲିକ ଚାବୁକ ଫଟ୍‌ଫଟ୍ କରି ତାକୁ ଗୋଟିଏ ଚକ ଭିତରେ ଡେଇଁବାକୁ ହୁକୁମ ଦେଲେ । ପିନାକିଯୋ ଚକ ଭିତରୁ ଡେଇଁପଡ଼ିଲା; କିନ୍ତୁ ତାର ଗୋଟିଏ ଗୋଡ଼ ଚକରେ ଲାଗିଯିବାରୁ ସେ ତଳେ କଚାଡ଼ି ହୋଇପଡ଼ିଲା । ଏହାଦ୍ୱାରା ତାର ଗୋଟିଏ ଗୋଡ଼ ମକଚି ହୋଇଗଲା ।

ସର୍କସ୍ ଶେଷ ହେଲା । ତାର ମାଲିକ କହିଲା—'ଏ ଛୋଟା ଗଧଟାକୁ ରଖି ଆଉ ଲାଭ କଅଣ ? ଯାଏଁ, ଏହାକୁ ବିକିଦେବି ।'

ସେ ତାକୁ ବିକିବାପାଇଁ ବଜାରକୁ ନେଇଗଲା । ସେଠାରେ ଚାରି ଅଣାରେ ବିକିବାକୁ ଇଚ୍ଛାକଲା । କିନ୍ତୁ କେହି ଛୋଟା ଗଧଟାକୁ କିଣିବାକୁ ରାଜି ହେଲେ ନାହିଁ । ଶେଷରେ ଜଣେ ପାଣ ଆସିଲା । ସେ ପାଞ୍ଚ ଅଣାରେ ଗଧଟାକୁ କିଣିବାପାଇଁ ରାଜିହେଲା ଓ କହିଲା—'ଏହାକୁ ମୁଁ କାହିଁକି କିଣୁଛି ଜାଣ ? ମୁଁ ଏହାର ଚମଡ଼ାରେ ଢୋଲ ତିଆରି କରିବି । ପାଞ୍ଚ ଅଣା ଏହାପାଇଁ ଯଥେଷ୍ଟ ।'

ପିନାକିଯୋ ଏହା ଶୁଣି ଭୟରେ ଥରିବାକୁ ଲାଗିଲା । କାନ୍ଦି କାନ୍ଦି ପାଣକୁ ଦୟାଭିକ୍ଷା କଲା । କିନ୍ତୁ ଗଧର କଥା ବୁଝୁଛି କିଏ ? ପାଣ ତାକୁ ପିଟି ପିଟି ସମୁଦ୍ର ଆଡ଼କୁ ନେଇଗଲା । କୂଳରେ ପହଞ୍ଚି ସେ ତା' ବେକରେ ଗୋଟିଏ ପଥର ବାନ୍ଧିଦେଲା । ପୁଣି ଗୋଟାଏ ଦଉଡ଼ିରେ

ବାନ୍ଧି ସେ ତାକୁ ପାଣିରେ ବୁଡ଼ାଇଦେଲା । ବେକରେ ବନ୍ଧା ହୋଇଥିବା ପଥର ଅଧିକ ଓଜନ ହେତୁ ସେ ଆଉ ପାଣି ଉପରକୁ ଉଠିପାରିଲା ନାହିଁ । ପାଣ ଦଉଡ଼ି ଧରି କୂଳରେ ବସିଥାଏ । ଭାବୁଥାଏ, ଗଧଟା ମରିଗଲେ ମୁଁ ତାର ଛାଲ ଉତାରିବି ।

ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ପିନାକିୟୋ ପାଣିରେ ବୁଡ଼ିରହିଲା । ପାଣ ତାପରେ ଭାବିଲା—ଏଥର ଗଧଟା ନିଶ୍ଚୟ ମରିଯାଇଥିବ । ସେ ଶୀଘ୍ର ଶୀଘ୍ର ଦଉଡ଼ି ଧରି ବାହାରକୁ ଟାଣିଲା । ଏ କଅଣ ? ଏଥିରେ ଗଧ ବଦଳରେ ଗୋଟାଏ କାଠକୁଣ୍ଢେଇ ବନ୍ଧା ହୋଇଛି । କୁଣ୍ଢେଇଟା ହାତ ଗୋଡ଼ ଚାଟୁଥାଏ । ପାଣ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ କାଠକୁଣ୍ଢେଇ ଆଡ଼େ ଚାହିଁ ରହିଲା । ତା'ପରେ କହିଲା—'କିଏରେ ତୁ ? ମୋ ଗଧ କୁଆଡ଼େ ଗଲା ? ମୁଁ ତାକୁ ଦଉଡ଼ିରେ ବାନ୍ଧି ବୁଡ଼ାଇ ରଖିଥିଲି ?'

'ସେ ଗଧ ମୁଁ ।' ପିନାକିୟୋ ହସି ହସି କହିଲା ।

'ତୁ ?'

'ହଁ ହଁ, ମୁଁ ?'

'ଆରେ କାଠକୁଣ୍ଢେଇ ! ମୁଁ ଭାରି ଖରାପ ଲୋକ । ମୁଁ ରାଗିଗଲେ ତୋର ବେକ ମୋଡ଼ିଦେବି । ମୋର ଗଧ କାହିଁ ? ଶୀଘ୍ର କହ ।'

'କହିଲି ପରା ! ମୁଁ ସେହି ଗଧ । ତୁମେ ପ୍ରଥମେ ମୋତେ ବାହାର କର ଓ ମୋ ବେକରୁ ଦଉଡ଼ି ଖୋଲିଦିଅ, ତା'ପରେ ମୁଁ ସବୁକଥା କହିବି ।'

ପାଣ ତାକୁ ପାଣିରୁ ବାହାର କଲା ଓ କହିଲା—'ଶୀଘ୍ର କହ । ଏ କି ଥଟ୍ଟା ? ମୁଁ ସେ ଗଧଟାକୁ ପାଞ୍ଚଅଣାରେ କିଣିଛି । ତା ଚମଡ଼ାରେ ମୋର ଢୋଲ ତିଆରି କରିବାର ଥିଲା ।'

'ଶୁଣ, ମୁଁ ପ୍ରଥମେ କାଠକୁଣ୍ଢେଇ ଥିଲି । ମୁଁ ମୋ ପରୀଭଉଣୀର କଥା ମାନିଲି ନାହିଁ । ପାଠପଢ଼ା ପରିବର୍ତ୍ତେ ଖେଳିବୁଲି ଦିନ କଟାଇବାପାଇଁ ମୂର୍ଖନଗରୀକୁ ଯାଇଥିଲି । କିଛିଦିନ ପରେ ମୁଁ ଗଧ ହୋଇଗଲି । ବର୍ତ୍ତମାନ ତୁମେ ଯେତେବେଳେ ଗଧକୁ ମାରିବାପାଇଁ ପାଣିରେ ବୁଡ଼ାଇଦେଲ ସେତେବେଳେ ମାଛ ଜମି ଗଲେ । ସେମାନେ ମୋର ଗଧ ରୂପକୁ ଖାଇଗଲେ ଓ ମୁଁ ପୁଣି କାଠକୁଣ୍ଢେଇ ହୋଇଗଲି । କହ ତ, ଏଥିରେ ମୋର ବା ଦୋଷ କଅଣ ।'

ପାଣ ରାଗରେ ଗୋଡ଼ କଚାଡ଼ି କହିଲା–'ହଁ ହଁ, ତୋର ଦୋଷ କାହିଁକି ହେଲା ? ମୋର ପାଞ୍ଚଅଣା ପଇସା ତ ପାଣିରେ ପଡ଼ିଲା । ତୁ କଅଣ ମନେକରିଛୁ ଯେ ମୁଁ ତୋତେ ଛାଡ଼ିଦେବି ? ମୁଁ ତୋତେ କାଠ ଭାଉରେ ବିକ୍ରିକରି ମୋ ପଇସା ଆଦାୟ କରିବି ।'

'ଆରେ ପାଣ ଭାଇ, ତୁମେ ନିଜ କାମ ଦେଖ । ମୋତେ ବିକିବ କଅଣ ? ପିନାକିୟୋ କହିଲା । ପାଣ ତାକୁ ଧରିବା ପାଇଁ ଦୌଡ଼ିଲା, କିନ୍ତୁ ପିନାକିୟୋ ଖିଲ୍‌ଖିଲ୍ ହୋଇ ହସିଲା ଓ ସଙ୍ଗେ ସଙ୍ଗେ ପାଣିରେ ବୁଡ଼ିଗଲା । ସେ ସମୁଦ୍ରରେ ପହଁରି ପହଁରି ଆଗକୁ ଚାଲିଲା । କିଛିଦୂର ଯିବାପରେ ସେ ପଛକୁ ମୁହଁମୋଡ଼ି ଯାହା ଦେଖିଲା, ସେଥିରେ ତାର ପ୍ରାଣ ଉଡ଼ିଗଲା । ଗୋଟାଏ ବଡ଼ 'କୁକୁରମୁହାଁ ମାଛ' ପାଟି ମେଲାକରି ତା ପଛେ ପଛେ ଆସୁଥାଏ । ଭୟରେ ପିନାକିୟୋର ହାତଗୋଡ଼ ଧରିଲା । ସେ ଖୁବ୍ ଶୀଘ୍ର ଶୀଘ୍ର ପହଁରିବାକୁ ଲାଗିଲା । କିନ୍ତୁ ତାର ହାତ ଯେପରି ଆଉ ପହଁରିବାକୁ ମନା କରିଦେଲା । ସେ ଗଜେ ଆଗକୁ ଗଲେ ମାଛ ଦଶଗଜ ଯାଏ । ଅଳ୍ପ ସମୟ ମଧ୍ୟରେ ମାଛଟା ପିନାକିୟୋର ପାଖକୁ ଆସିଗଲା । ସେ ଗୋଟାଏ ନିଃଶ୍ୱାସରେ ଅନେକ ପାଣି ସହିତ ପିନାକିୟୋକୁ ତା ମୁହଁ ଭିତରକୁ ଟାଣିନେଲା । ପାଣି ବାହାରକୁ ବାହାର କରିଦେଲା ଓ ପିନାକିୟୋକୁ ଗିଳିଦେଲା । ପିନାକିୟୋ ଏକାଥରକେ ଯାଇ ମାଛ ପେଟରେ ପଡ଼ିଲା । ତା' ପରେ ସେ ଅଚେତ ହୋଇଗଲା ।

କିଛି ସମୟ ପରେ ତାର ଚେତା ଆସିଲା । ସେ ନିଜକୁ ଏକ ଅଦ୍ଭୁତ ଦୁନିଆରେ ଥିବାର ଦେଖିଲା । ମାଛ ପେଟର ଚାରିଆଡ଼ ଘନ ଅନ୍ଧକାର ହୋଇଥାଏ ଓ ଝଙ୍କା ଝଙ୍କା ହୋଇ ପବନ ଆସୁଥାଏ । ଏହା ମାଛର ଗାଲିବାଟେ ପଶୁଥାଏ । ପ୍ରଥମେ ପିନାକିୟୋ ଖୁବ୍ ସାହସର ସହିତ କାମ କଲା, କିନ୍ତୁ ପରେ ସେ ଅଧୈର୍ଯ୍ୟ ହୋଇ କାନ୍ଦି କାନ୍ଦି ଡାକ ପକାଇଲା । ରକ୍ଷାକର, ରକ୍ଷାକର, ମୁଁ ବିପଦରେ ପଡ଼ିଗଲି । କିଏ ଅଛ ସାହାଯ୍ୟ କର ।'

'ଆରେ ପାଗଳ, ଏଠାରେ କିଏ ଅଛି ଯେ ତୋତେ ରକ୍ଷା କରିବାକୁ ଆସିବ ?' ଗୋଟିଏ ଛୋଟ ମାଛ ମଧୁର ସ୍ୱରରେ କହିଲା । ସେ ମଧ୍ୟ ପିନାକିୟୋ ସହିତ ମାଛ ପେଟକୁ ଚାଲିଯାଇଥିଲା । ପଚାରିଲା–'ତୁମେ କେଉଁ ମାଛ, କହ ତ ଆଗେ ?'

'ମୁଁ ମାଛ ନୁହେଁ, ଏକ କାଠକୁଣ୍ଢେଇ ।'

'ତୁମେ ପୁଣି ଏ ମାଛ ପେଟକୁ ଆସିଲ କିପରି ?' ବର୍ତ୍ତମାନ ଏଠାରୁ ବାହାରିବା ମୁସ୍କିଲ । ମାଛ ଆମକୁ ପଚାଇ ଦେବ, ତା'ପରେ ଆମେ ମରିଯିବା ।'

'କିନ୍ତୁ ମୁଁ ତ ଏହା ପେଟରେ ମରିବାକୁ ଚାହେଁନା । ମୁଁ ଏଠାରୁ ପଳାଇବାକୁ ଚାହେଁ ।' ପିନାକିୟୋ କହିଲା । ହଠାତ୍ ସେ ଦେଖିଲା ଯେ କିଛିଦୂର ଆଗକୁ କୌଣସି ଗୋଟିଏ ଜିନିଷ ଚିକ୍‌ଚିକ୍ କରୁଅଛି । ସେ ସେହି ଆଡ଼କୁ ଚାଲିଲା ।

ପିନାକିୟୋ ଯେତେ ଆଗକୁ ବଢୁଥାଏ, ତାହା ସେତେ ସ୍ପଷ୍ଟ ଦେଖାଯାଉଥାଏ । ଆଉ କିଛିଦୂର ଆଗକୁ ଯାଇ ସେ ଯାହା ଦେଖିଲା ସେଥିରେ ତାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ମାଛର ପେଟକୁ ଏସବୁ ଜିନିଷ ଆସିଲା କିପରି ? ସେଠାରେ ଗୋଟିଏ ଟେବୁଲ ରଖା ହୋଇଥାଏ । ଟେବୁଲ ଉପରେ ଗୋଟିଏ ମହମବତି ଜଳୁଥାଏ ଓ ପାଖରେ ଜଣେ ବୁଢ଼ା ବସିଥାଏ । ବୁଢ଼ା ଚୋବାଇ ଚୋବାଇ ଜିଅନ୍ତା ମାଛ ଖାଉଥାଏ । ଏହା ଦେଖି ପିନାକିୟୋ କିଛି ସମୟ ଭ୍ରମରେ ପଡ଼ିଗଲା । ସେ ସ୍ୱପ୍ନ ଦେଖୁ ନାହିଁ ତ ! କିନ୍ତୁ ଯେତେବେଳେ ସେ ସେହି ବୁଢ଼ା ଆଡ଼କୁ ଚାହିଁଦେଲା ସେତେବେଳେ ତା' ମୁହଁରେ ଖୁସିର ରେଖା ଦେଖାଗଲା । ସେ ଦୌଡ଼ିଯାଇ ସେହି ବୁଢ଼ା ବେକରେ ଓହଳି ପଡ଼ି କହିଲା–'ବାପା ! ବାପା ! ବାପା !! ମୁଁ ତୁମକୁ ଖୋଜିବାକୁ ବାହାରିଥିଲି । ବର୍ତ୍ତମାନ ମୁଁ ତୁମକୁ କଦାପି ଛାଡ଼ିବି ନାହିଁ ।'

'ପିନାକିୟୋ ! ତୁମେ ଏଠାରେ କିପରି ? ମୁଁ ସ୍ୱପ୍ନ ଦେଖୁ ନାହିଁ ତ ? ଆ, ପୁଅ ମୋର !'

'ପିନାକିୟୋ ତାକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ ଘଟଣା କହିଗଲା । ଶେଷରେ ସେ କହିଲା ଯେ, କିପରି ସେ ଗଧ ହେଲା ଓ କିପରି ପାଣକୁ ଠକି ମାଛ ପେଟରେ ଆସି ପଡ଼ିଲା । ତା'ପରେ ତାର ବାପା ଜପେତୋ ମଧ୍ୟ ନିଜର ଘଟଣା ସବୁ କହିଗଲେ । 'ଯେତେବେଳେ ମୋର ନୌକା ସମୁଦ୍ର ଭିତରେ ଲହଡ଼ିରେ ଧକ୍‌କା ଖାଉଥାଏ, ସେତେବେଳେ ମୁଁ ତୁମକୁ ସମୁଦ୍ରକୂଳରେ ଠିଆ ହୋଇଥିବାର ଦେଖି ଚିହ୍ନିପାରିଥିଲି । ନୌକାକୁ କୂଳରେ ଲଗାଇବା ପାଇଁ ବହୁ ଚେଷ୍ଟା କଲି । କିନ୍ତୁ ତୋଫାନ ଖୁବ୍ ଜୋର୍‌ରେ ହେଉଥିଲା । ତୋଫାନରେ ମୋର ନୌକା ବୁଡ଼ିଯିବାରୁ ଏହି ମାଛ ମୋତେ ଗିଳିଦେଲା ।'

'କିନ୍ତୁ ସଙ୍ଗେ ସଙ୍ଗେ ଆଉ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଏହି ତୋଫାନରେ ପଡ଼ି ଗୋଟିଏ ବାଣିଜ୍ୟତରୀ ମଧ୍ୟ ବୁଡ଼ିଗଲା । ମାଛ ମୁହଁରୁ ସମସ୍ତ ଜାହାଜର ଯାତ୍ରୀମାନେ

ତ ରକ୍ଷା ପାଇଗଲେ; କିନ୍ତୁ ମାଛ ପୂରା ଜାହାଜଟିକୁ ଗିଳିଦେଲା । ସେହି ଜାହାଜରେ ଖାଦ୍ୟ ଜିନିଷ ଭରପୂର ଥିଲା । ଯେତେବେଳେ ଜାହାଜ ଏହା ପେଟରେ ପହଞ୍ଚିଲା, ମୁଁ ଭାରି ଖୁସି ହେଲି । ସେଥିରେ ମଦ ବୋତଲ, ବିସ୍କୁଟ, ଚିନି, ଚା, କଫି ଓ ଶୁଖିଲା ଗୁଣ୍ଡଦୁଧ ପ୍ରଭୃତି ଭର୍ତ୍ତି ହୋଇଥିଲା । ଏହି ଜିନିଷ ବଳରେ ମୁଁ ଦୁଇ ବର୍ଷ ହେଲା ଏହି ମାଛ ପେଟ ଭିତରେ ବଞ୍ଚିରହିଛି; କିନ୍ତୁ ବର୍ତ୍ତମାନ ସେ ସବୁ ଶେଷ ହୋଇଗଲାଣି । କେବଳ ଏହି ମହମବତିଟି ରହିଛି । ସେ ମଧ ଅଳ୍ପ ସମୟ ପରେ ଶେଷ ହୋଇଯିବ । ତା'ପରେ ଆମକୁ ଅନ୍ଧାରରେ ରହିବାକୁ ପଡ଼ିବ ।'

'ନା ବାପା, ଅନ୍ଧାରରେ ମୋତେ ଡର ମାଡ଼ିବ । ଚାଲ, ଏଠାରୁ ପଳାଇବା । ତୁମକୁ ସିନା ପହଁରି ଆସେ ନାହିଁ, କିନ୍ତୁ ମୁଁ ତ କାଠରେ ତିଆରି ହୋଇଛି, ଖୁବ୍ ପହଁରି ପାରିବି । ତୁମେ ମୋ ପିଠି ଉପରେ ବସିଯାଅ । ଏହିପରି ଭାବରେ ସମୁଦ୍ର ପାର ହୋଇଯିବା ।' ପିନାକିୟୋ କହିଲା ।

'ଆରେ ବାପ, ଏସବୁ ବୃଥା କଥା । ଏଥିରୁ ବଞ୍ଚି ବାହାରିବା ମୁସ୍କିଲ ।'

'ନା ବାପା ! ତୁମେ ଚାଲ ତ । ଆଣ, ବତି ମୋତେ ଦିଅ ।' ଏହା କହି ପିନାକିୟୋ ମହମବତି ହାତରେ ଧରି ବାହାରିପଡ଼ିଲା ! ଜପେତୋ ମଧ ତା' ପଛେ ପଛେ ଚାଲିଲା । ମାଛର ବେକ ପାଖରେ ପହଞ୍ଚି ଦୁହେଁ ଠିଆ ହୋଇଗଲେ । ମାଛଟା ବୁଢ଼ୀ ହୋଇଯାଇଥାଏ । ଏଣୁ ସେ ମୁହଁ ଖୋଲି ଶୁଏ । ଯେତେବେଳେ ସେ ମୁହଁ ଖୋଲିଲା, ପିନାକିୟୋ ଦେଖିଲା ଯେ ବାହାରେ ତାରାମୟ ଆକାଶ ଓ ଚନ୍ଦ୍ରକିରଣ ଦେଖାଯାଉଛି । ସେ କହିଲା—'ବାପା, ଶୀଘ୍ର ଚାଲ । ଏହା ମୁହଁରୁ ବାହାରିବାପାଇଁ ଯାହା ଡେରି ହେବ । ଏହା ହିଁ ଅପୂର୍ବ ସୁଯୋଗ ! ପୁଣି ଆମେ ତ ସହଜରେ ସମୁଦ୍ର ପାରି ହୋଇଯିବା ।'

ଦୁହେଁ ଧୀରେ ଧୀରେ ଗୋଡ଼ ଚାପି ଚାପି ମାଛ ବେକ ପାର ହୋଇ ତାର ମୁହଁରେ ଯାଇ ପହଞ୍ଚିଲେ । ମାଛଟାର ଦାନ୍ତ ଦେଖିବାକୁ ବଡ଼ ବଡ଼ ପାହାଡ଼ ପରି ଓ ଜିଭ ଲମ୍ବା ଚଉଡ଼ା ସଡ଼କ ପରି । ଦୁହେଁ ଜିଭ ଉପରେ ଦୌଡ଼ି ଦୌଡ଼ି ତାର ମୁହଁରୁ ବାହାରିଆସିଲେ । ପିନାକିୟୋ ବାପାଙ୍କୁ ପିଠି ଉପରେ ବସାଇ ପାଣିକୁ ଡେଇଁପଡ଼ିଲା ଓ ଶୀଘ୍ର ଶୀଘ୍ର ପହଁରିବାକୁ ଲାଗିଲା । ମାଛ ଶୋଇଥାଏ । ସେ କିଛିହେଲେ ଜାଣିପାରିଲା ନାହିଁ ।

ପିନାକିୟୋ ଖୁବ୍ ଶୀଘ୍ର ଶୀଘ୍ର ପହଁରୁଥାଏ । ହଠାତ୍ ସେ ଜାଣିପାରିଲା ଯେ ତାର ବାପା କାନ୍ଧରେ ବସି ଥରୁଛନ୍ତି । ବୁଢ଼ା ହୁଏତ ଭୟରେ ଥରୁଥାଏ ଅଥବା ତାଙ୍କୁ ଜ୍ୱର ହୋଇଆସିଥାଏ । ପିନାକିୟୋ ଟିକିଏ ଚିନ୍ତିତ ହେଲା । ତା'ପରେ କହିଲା– ବାପା, ଟିକିଏ ସାହସ ଧର, ଆମେ ବର୍ତ୍ତମାନ କୂଳରେ ପହଞ୍ଚିଯିବା ।

କିନ୍ତୁ ତାର ବାପା ଅଧୈର୍ଯ୍ୟ ହୋଇପଡ଼ିଲେ । ପିନାକିୟୋ ଥକିପଡ଼ିଲା । ସେ ବୁଡ଼ିଯିବାକୁ ଲାଗିଲା ଓ କହିଲା–'ବାପା, ବର୍ତ୍ତମାନ ବଞ୍ଚିବା ମୁସ୍କିଲ । ମୁଁ ବୁଡ଼ିଯାଉଛି ।'

ସେତେବେଳେ ପଛରୁ କିଏ ମଧୁର ସ୍ୱରରେ କହିଲା– 'କିଏ ବୁଡ଼ିଯାଉଛ ?'

'ମୁଁ ପିନାକିୟୋ ଓ ମୋର ବାପା । କିନ୍ତୁ ତୁମେ କିଏ ?'

'ମୁଁ ? ମୁଁ ସେହି ମାଛ । ଯେ ତୁମ ସହିତ କୁକୁରମୁହାଁ ମାଛ ପେଟରେ ବନ୍ଦୀ ହୋଇଥିଲି । ମୁଁ ମଧ ତୁମ ପଛେ ପଛେ ପଳାଇଆସିଛି । ତୁମେ ଥକିପଡ଼ିଛ, ନା ? ଆସ, ମୋ ଲାଞ୍ଜ ଧରିପକାଅ । ମୁଁ ବର୍ତ୍ତମାନ ତୁମକୁ କୂଳରେ ପହଞ୍ଚାଇଦେବି ।' ପିନାକିୟୋ ତାର ଲାଞ୍ଜ ଧରିପକାଇଲା । ଅଳ୍ପ ସମୟ ମଧ୍ୟରେ ମାଛ ଦୁହିଁଙ୍କୁ କୂଳରେ ପହଞ୍ଚାଇଦେଲା । କୂଳରେ ପହଞ୍ଚି ପିନାକିୟୋ ମାଛକୁ ଧନ୍ୟବାଦ ଦେଇ ତା' ମୁଣ୍ଡରେ ଚୁମ୍ବନ ଦେଲା । ମାଛ ଆଖିରୁ ଲୁହ ଗଡ଼ିଲା । କିନ୍ତୁ ଲୁହ ଦେଖାଇବାକୁ ସେ ଚାହୁଁ ନଥାଏ । ଏଣୁ ସଙ୍ଗେ ସଙ୍ଗେ ବୁଡ଼ିଯାଇ ପାଣିରେ ଅଦୃଶ୍ୟ ହୋଇଗଲା ।

ବର୍ତ୍ତମାନ ସକାଳ ହୋଇଆସିଲା । ପୂର୍ବଦିଗ ରଙ୍ଗିନ୍ ଦେଖାଯାଉଥାଏ । ପିନାକିୟୋ ତା' ବାପାଙ୍କୁ ରାସ୍ତା ଦେଖାଇ ଆଗକୁ ଚାଲିଲା । ରାସ୍ତାରେ ସେମାନେ ଦୁଇଜଣ ଭିକାରି ଦେଖିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ଶୃଗାଳ ଓ ଅନ୍ୟଟି ବିଲେଇ । ସେଇ ଦୁଷ୍ଟ ବିଲେଇ ଅନ୍ଧ ହୋଇଥିବା ବାହାନା କରି କରି ପ୍ରକୃତରେ ଅନ୍ଧ ହୋଇଯାଇଥାଏ ଓ ଶୃଗାଳ ମଧ ଛୋଟା ହୋଇଯାଇଥାଏ । ବର୍ତ୍ତମାନ ସେମାନେ କାହାରିକୁ ଠକି ପାରୁ ନଥାନ୍ତି । ସେମାନଙ୍କୁ ଭିକ ମଧ କେହି ଦେଉ ନଥାନ୍ତି । ତାଙ୍କ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଥାଏ । ଏପରିକି ଥରେ ଶୃଗାଳ ଖାଇବାକୁ ନ ପାଇବାରୁ ନିଜର ଲାଞ୍ଜ ପର୍ଯ୍ୟନ୍ତ କାଟି ବିକିବାକୁ ପଡ଼ିଥିଲା । ପିନାକିୟୋକୁ ଦେଖି ଶୃଗାଳ କହିଲା–'ପିନାକିୟୋ, ଏ ଅନ୍ଧ ଓ ଛୋଟା ପ୍ରତି କିଛି ଦୟାକର ।'

'ହଁ, କିଛି ଦୟାକର' ବିଲେଇ କହିଲା ।

ପିନାକିୟୋ ରାଗିଯାଇ କହିଲା–'ଦୂର ହୁଅ, ଦୁଷ୍ଟ କେଉଁଠିକାର ! ଆଉ କେବେ ମୋ ସାମନାକୁ ଆସିବ ନାହିଁ । ତୁମ ଦୁହିଁଙ୍କୁ ମୁଁ ଭଲରୂପେ ଜାଣେ ।'

'ହାୟ, ପିନାକିୟୋ ଭାଇ ! ଅଭାଗିନୀ ପ୍ରତି କିଛି ଦୟା କର ତ !' ଶୃଗାଳ ନିକୁଟି ହୋଇ କହିଲା ଓ ତାର କଟା ଲାଞ୍ଜଟା ହଲାଇବାକୁ ଲାଗିଲା ।

'ହଁ, ଅଭାଗିନୀ ପ୍ରତି କିଛି ଦୟାକର !' ବିଲେଇ କହିଲା ।

'ଚୁପ୍ ରହ, ପଛକଥା ଭୁଲିଗଲ କି ? ଚୋରି ମାଲ ଜୀବନସାରା ଚଳେ ନାହିଁ । ତୁମେ ସାରା ଜୀବନ ଚୋରି କରିଛ । ବର୍ତ୍ତମାନ ଭୋକରେ ମର ।' ଏହା କହି ପିନାକିୟୋ ତା' ବାପାଙ୍କ ସହିତ ଆଗକୁ ଚାଲିଲା । କିଛି ଦୂର ଯିବାପରେ ସେମାନଙ୍କୁ ଗୋଟିଏ କୁଡ଼ିଆ ମିଳିଲା । ପିନାକିୟୋ ଦରଜା ଖଟ୍ ଖଟ୍ କରି କହିଲା–'ଭିତରେ କିଏ ଅଛ ? ଆମ ବାପ ପୁଅଙ୍କୁ ଟିକିଏ ଆଶ୍ରା ଦିଅ । ଆମେ ବଡ଼ ବିପଦରେ ପଡ଼ିଛୁ ।'

'ଭିତରକୁ ଚାଲିଆସ ।' ଭିତରୁ କାହାର ମଧୁର ସ୍ୱର ଶୁଭିଲା ।

ଦୁହେଁ ଭିତରକୁ ଚାଲିଗଲେ । ପିନାକିୟୋ ଦେଖିଲା ସେ ଭିତରେ ସେହି ପାଗଳା ଝିଙ୍କାରି ବସିଛି । ପିନାକିୟୋ ଖୁସି ହୋଇ କହିଲା–'ଆରେ ଝିଙ୍କାରି ଭାଇ ! ତୁମେ ଏହିଠାରେ ରହୁଛ ?'

'ହଁ ଏଇଠି ରହୁଛି । ତୁମର ମନେଅଛି, ତୁମେ ମୋତେ ହାତୁଡ଼ି ଦ୍ୱାରା ମାରିଛ । କିନ୍ତୁ ଯାଅ, ମୋ ପ୍ରତି ଯିଏ ଖରାପ ବ୍ୟବହାର କରେ, ମୁଁ ତା' ପ୍ରତି ଖରାପ ବ୍ୟବହାର କରେ ନାହିଁ । ତୁମ ଦୁହିଁଙ୍କ ପ୍ରତି ମୋର ଦୟା ହେଉଛି । ତୁମେ ଇଚ୍ଛାକଲେ ଏଠାରେ ରହିପାର । କାରଣ ନୀଳଆଖି ପରୀ ମୋତେ ଏହି କୁଡ଼ିଆ ଖଣ୍ଡି ରହିବାପାଇଁ ଦେଇଛି ।'

'ପରୀ ? ସେ କେଉଁଠି ? କେବେ ଆସିବ ?' ପିନାକିୟୋ ଉତ୍ସୁକତା ସହ ପଚାରିଲା–'ସେ ମୋ ପରୀଭଉଣୀ । ମୁଁ ତା' ସହିତ ଦେଖା କରିବାକୁ ଚାହେଁ ।' ଏହା କହୁ କହୁ ତା' ଆଖିରୁ ଲୁହ ବୋହିପଡ଼ିଲା । ସେ ତାର ବେମାରିଆ ବାପାଙ୍କୁ ଖଣ୍ଡିଏ ଘାସ ଚଟେଇରେ ଶୁଆଇଦେଇ ବାହାରିପଡ଼ିଲା । ସେ ଜଣେ ମାଳୀ ପାଖରେ ପହଞ୍ଚି କହିଲା–'ମାଳୀ ଭାଇ, ମୋତେ ଏକ ଗ୍ଲାସ ଦୁଧ ଦିଅ । ମୋ ବାପାଙ୍କ ଦେହ ଭଲ ନାହିଁ ।'

ମାଳୀ କହିଲା–'ମୁଁ ତୁମକୁ ବୁନ୍ଦାଏ ହେଲେ ଦୁଧ ମାଗଣାରେ ଦେବି ନାହିଁ । ଯଦି ତୁମେ ମୋର ବିଲରେ ଛିଞ୍ଚିବା ପାଇଁ ଶହେ ବାଲଟି ପାଣି କାଢ଼ିଦେବ, ତେବେ ମୁଁ ତୁମକୁ ଏକ ଗ୍ଲାସ ଦୁଧ ଦେଇପାରେ । ପ୍ରଥମେ ମୋ ଗଧ ପାଣି କାଢୁଥିଲା । କିନ୍ତୁ ସେ ବର୍ତ୍ତମାନ ମରିବାକୁ ବସିଛି ।'

'ଆଚ୍ଛା, ମୁଁ ତୁମର ଗଧକୁ ଦେଖିପାରିବି କି ?'– ପିନାକିୟୋ ଚିନ୍ତାକରି କହିଲା ।

'ହଁ ହଁ, ଆସ ଦେଖିବ ।' ଏହା କହି ମାଳୀ ତାକୁ ଭିତରକୁ ନେଇଗଲା । ପିନାକିୟୋ ଗଧକୁ ଦେଖି ସଙ୍ଗେ ସଙ୍ଗେ ଚିହ୍ନିପାରିଲା । ଏ ତାର ସେହି ପୁରୁଣା ସାଥୀ ସିକିୟାଁ ପହିଲିମାନ, ଯେ ପଢ଼ା ଛାଡ଼ି ତା ସହିତ ମୂର୍ଖନଗରୀ ଯିବାପାଇଁ ପଳାଇ ଆସିଥିଲା । ଦୁହେଁ ଏକାବେଳେ ଗଧ ରୂପରେ ବଜାରରେ ବିକ୍ରି ହୋଇଥିଲେ ।

ପିନାକିୟୋ ମାଳୀର କାମ ପୂରାକଲା । ତା'ପରେ ମାଳୀ ତାକୁ ଏକ ଗ୍ଲାସ ଦୁଧ ଦେଲା । ସେ କୁଡ଼ିଆକୁ ଫେରିଆସି ତା' ବାପାଙ୍କୁ ଦୁଧ ପିଆଇଦେଲା । ବର୍ତ୍ତମାନ ପିନାକିୟୋ ଖାଲି ସମୟରେ ଟୋକେଇ ବୁଣେ ଓ ବଜାରରେ ସେଗୁଡ଼ିକ ବିକ୍ରିକରି ଦୁଇ ଚାରି ପଇସା କମାଏ । ସେ ଭଲପିଲାଙ୍କ ପରି ଖୁବ୍ ସତର୍କ ହୋଇ ଚଳେ ଓ ଖୁବ୍ କାମ କରେ । ଧୀରେ ଧୀରେ ସେ ଅନେକ ପଇସା ଜମାକଲା । ଦିନେ ସେ ତା ବାପାଙ୍କୁ କହିଲା–'ବାପା, ଏହି ନିକଟରେ ଥିବା ବଜାରକୁ ଯାଇ ମୁଁ କୋଟ, ଟୋପି ଓ ଜୋତା କିଣିବାକୁ ଇଚ୍ଛା କରୁଛି । ଯେତେବେଳେ ମୁଁ ସେଗୁଡ଼ିକ ପିନ୍ଧି ଫେରିଆସିବି, ସେତେବେଳେ ତୁମେ ମନେକରିବ ଯେ କୌଣସି ସାହେବ ଆସିଲା ।' ଏହା କହି ପିନାକିୟୋ ବାହାରିପଡ଼ିଲା ।

ରାସ୍ତାରେ ଗୋଟାଏ ଗେଣ୍ଡା ସହିତ ତାର ଦେଖାହେଲା, ଯେ ସେଦିନ ପରୀ ଘରେ ଚାକର ଥିଲା । ପିନାକିୟୋ ତାକୁ ପରୀ କଥା ପଚାରିଲା । ଗେଣ୍ଡା ତା'ର ଧୀର ସ୍ୱରରେ କହିଲା–'ଓ, ପିନାକିୟୋ ! ବିଚାରୀ ପରୀ ଆଜିକାଲି ବେମାର ହୋଇ ହସ୍‌ପିଟାଲରେ ପଡ଼ିଛି । ଆଜିକାଲି ସେ ଏତେ ଦୁଃଖୀ ହୋଇଗଲାଣି ଯେ ନିଜ ପାଇଁ ଖାଇବା ଗଣ୍ଡିକ ମଧ ଯୋଗାଡ଼ କରିପାରୁ ନାହିଁ ।

ଏହା ଶୁଣି ପିନାକିୟୋ ମନରେ ଭାରି ଦୁଃଖ ହେଲା । ସେ କହିଲା–'ଆହା ! ପରୀ ଏତେ ଦୁଃଖରେ ଅଛି । ନିଶ୍ଚ [illegible]

ଜୋତା ଟୋପି କିଣିବାକୁ ଯାଉଥିଲି । କିନ୍ତୁ ମୁଁ ପରେ ଏସବୁ କିଣିବି । ପରୀ ମୋତେ ଖୁବ୍ ସାହାଯ୍ୟ କରିଛି । ମୋ ପାଖରେ ଆଉ ଟଙ୍କା ଥିଲେ ମୁଁ ଏତେବେଳେ ତୁମକୁ ଦେଇଥାଆନ୍ତି । ଯାଅ, ମୋ ତରଫରୁ ପରୀକୁ ଖୁବ୍ ସେବା କରିବ । ମୁଁ ମଧ୍ୟ ପରୀକୁ ଦେଖିବାପାଇଁ ଇଚ୍ଛା କରୁଛି । କିନ୍ତୁ କଅଣ କରିବି ? ମୋ ବାପା ବେମାର ଅଛନ୍ତି ।

ଗେଣ୍ଡା ଭାରି ଅଳସୁଆ ଥିଲା । ଏଥର ପଇସା ପାଇ ସେ ଖୁବ୍ ବେଗରେ ପଳାଇଲା । ସେଦିନ ପିନାକିୟୋ ବହୁତ ରାତି ପର୍ଯ୍ୟନ୍ତ କାମ କଲା । ଆଠଟା ଜାଗାରେ ଷୋଳଟା ଟୋକେଇ ତିଆରି କଲା । ଏଗୁଡ଼ିକ ସକାଳେ ବିକ୍ରି କରିବାକୁ ଯିବାର କଥା । କିନ୍ତୁ ଅଧରାତି ପର୍ଯ୍ୟନ୍ତ କାମ କରିବା ପରେ ସେ ଶୋଇପଡ଼ିଲା ।

ରାତିରେ ସ୍ୱପ୍ନ ଦେଖିଲା ଯେ ସେହି ସୁନ୍ଦରୀ ପରୀ ଆସି ତାକୁ କହୁଛି—'ସାବାସ୍ ପିନାକିୟୋ, ମୁଁ ତୁମ ପ୍ରତି ଖୁବ୍ ଖୁସି ହୋଇଛି ଓ ତୁମର ପୁରୁଣା ଅପରାଧ କ୍ଷମା କରୁଛି । ଯେଉଁ ପିଲା ନିଜ ପିତାମାତାଙ୍କର ସେବା କରେ, ତାର ସମସ୍ତ ଅପରାଧ କ୍ଷମା କରିଦିଆଯାଏ । ମୁଁ ଆଶାକରେ, ତୁମେ ଭବିଷ୍ୟତରେ ମଧ୍ୟ ଏହିପରି ଭଲ ଭଲ କାମ କରିବ ଓ ଖୁବ୍ ସାବଧାନ ହୋଇ ଚଳିବ । ଆଚ୍ଛା ମୁଁ ଯାଉଛି, ତୁମେ ଭଲରେ ରୁହ ।'

ହଠାତ୍ ପିନାକିୟୋର ନିଦ ଭାଙ୍ଗିଗଲା । ସେ ସ୍ୱପ୍ନକଥା ଭାବି ଆଶ୍ଚର୍ଯ୍ୟ ହେଲା । ସବୁଠାରୁ ଆଶ୍ଚର୍ଯ୍ୟର କଥା—ଆଖି ଖୋଲି ଦେଖେ ତ ସେ ଆଉ କାଠକୁଣ୍ଢେଇ ହୋଇ ନାହିଁ । ସେ ଅନ୍ୟ ବାଳକଙ୍କ ପରି ଗୋଟିଏ ବାଳକ ହୋଇଯାଇଛି ।

ସେ ଆଖପାଖକୁ ଆଖି ଫେରାଇ ଦେଖିଲା । ତଥାପି ତାର ଆଖିକୁ ବିଶ୍ୱାସ ହେଲାନାହିଁ । ତାର ସେ କୁଡ଼ିଆ ଘର ଆଉ ନାହିଁ । ସେ ଏକ ସୁନ୍ଦର କୋଠାଘରେ ରହିଛି । ଘାସ ଚଟେଇ ବଦଳରେ ସେ ଏକ ସୁନ୍ଦର ଓ ମୁଲାଏମ୍ ବିଛଣାରେ ବସିଛି । ସେ ଡେଇଁପଡ଼ି ଠିଆ ହୋଇଗଲା । ଗୋଟିଏ ଛୋଟ ମେଜ ଉପରେ ତାର ନୂଆ ଲୁଗା ରଖାହୋଇଥାଏ । ନୂଆ ଟୋପି ଓ ଚମଡ଼ାର ଖୁବ୍ ସୁନ୍ଦର ଜୋତା ମଧ୍ୟ ରଖାହୋଇଥାଏ ।

ସେ ଲୁଗା ଓ ଜୋତା ପିନ୍ଧିଲା । ପୁଣି ଯେମିତି ପକେଟରେ ହାତ ପୂରାଇଦେଇଛି ଦେଖିଲା ଯେ, ଗୋଟିଏ ଛୋଟ ହାତୀ ଦାନ୍ତର ଡିବା ରହିଛି । ତହିଁରେ ଲେଖାଅଛି—

ଚାଳିଶଟି ସୁନା ମୋହର ଚିକ୍‌ଚିକ୍ କରୁଛି । ଏହା ତାକୁ ପଇସା ବଦଳରେ ମିଳିଥାଏ ଯେଉଁ ପଇସା ସେ ପରୀର ଔଷଧ ଖରଚ ପାଇଁ ଗେଣ୍ଡାକୁ ଦେଇଥିଲା ।

ପିନାକିୟୋ ଯାଇ ଅଇନା ଆଗରେ ଠିଆହୋଇଗଲା । ସେ ନିଜକୁ ଚିହ୍ନିପାରୁ ନଥାଏ । କାରଣ ପୂର୍ବେ ସେ ଗୋଟାଏ କାଠକୁଣ୍ଢେଇ ଥିଲା, ବର୍ତ୍ତମାନ ଗୋଟିଏ ସୁନ୍ଦର ଓ ବୁଦ୍ଧିମାନ୍ ବାଳକ ହୋଇଯାଇଛି, ଯେ କି ନୂଆ ଲୁଗା ଓ ଜୋତା ପିନ୍ଧି ଠିଆହୋଇଛି ।

'ଆଉ ମୋ ବାପା କାହାନ୍ତି ? ଯାଏ ତାଙ୍କୁ ଟିକିଏ ଦେଖି ଆସେ ।' ସେ ଦଉଡ଼ିଯାଇ ଅନ୍ୟ ଘରେ ପହଞ୍ଚିଲା । ସେଠାରେ ବୁଢ଼ା ଜପେଟୋ ମଜାରେ ବସି ତା କାମ କରୁଥାଏ । ସେ ସେହି ପୁରୁଣା କାଠ ଖେଳନା ତିଆରି କରିବା ଆରମ୍ଭ କରିଥାଏ ।

ସେ ଦଉଡ଼ିଯାଇ ନିଜ ବୁଢ଼ା ବାପାର ବେକରେ ଓହଳିପଡ଼ିଲା । କହିଲା– 'ବାପା, ଏସବୁ କିପରି ହେଲା ? ଏସବୁ ବଦଳିଗଲା କିପରି ?'

'ଏସବୁ ତୋରି ହେତୁ ହେଲାରେ ପୁଅ । ତୁ ହିଁ କରିଛୁ ।' ଜପେଟୋ କହିଲା ।

'ମୁଁ କରିଛି ?'

'ହଁ, ଆଉ କଅଣ ? ଯେତେବେଳେ ଦୁଷ୍ଟ ବାଳକମାନେ ନିଜର ଅନ୍ୟାୟ କାମ ପାଇଁ ଅନୁତାପ କରନ୍ତି, ପୁଣି ବୁଦ୍ଧିମାନ୍ ବାଳକ ହେବାପାଇଁ ଚେଷ୍ଟା କରନ୍ତି, ସେତେବେଳେ ସେମାନଙ୍କ ଘର ଏହିପରି ହସଖୁସିରେ ଭରିଯାଏ ।'

'ବାପା, ସେହି କାଠର ପିନାକିୟୋ କୁଆଡ଼େ ଗଲା ?'

'ସେ ଏଇଠି ରହିଲା ।' ଜପେଟୋ କାଠର ଗୋଟିଏ ବଡ଼ କୁଣ୍ଢେଇ ଆଡ଼କୁ ଇସାରା କରି ଦେଖାଇଦେଇ କହିଲା । କୁଣ୍ଢେଇଟା ଚୌକି ଉପରେ ପଡ଼ିଥାଏ । ତାର ମୁଣ୍ଡ ଗୋଟାଏ ଦିଗକୁ ଝୁଲି ପଡ଼ିଥାଏ । ତାର ହାତ ଦୁଇଟା ଜୀବନ ନ ଥିଲା ପରି ଝୁଲୁଥାଏ ଓ ଗୋଡ଼ ଦୁଇଟା ତେଢ଼ା ହୋଇ ପଡ଼ିଥାଏ । ତାକୁ ଦେଖି ପିନାକିୟୋକୁ ହସ ମାଡ଼ିଲା ।

ପିନାକିୟୋ କିଛି ସମୟ ତାକୁ ଚାହିଁରହିଲା । ତା'ପରେ ବୁଦ୍ଧିଆ ପିଲା ପରି ପଚାରିଲା–'ବାପା, ଯେତେବେଳେ ମୁଁ କାଠକୁଣ୍ଢେଇ ଥିଲି, ମୋତେ ଅଳସୁଆ ଲାଗୁଥିଲା । ବର୍ତ୍ତମାନ ମୁଁ କେତେ ଫୁର୍ତ୍ତି ଅଛି ଓ ଗୋଟିଏ ଭଲ ପିଲା ହୋଇଗଲିଣି ।'



